


# ଅମୃତ ବଚନ

## ନୀତି ଶିକ୍ଷାମୂଳକ ଆପ୍ତବାଣୀ



ଡକ୍ଟର କୃତ୍ତିବାସ ନାୟକ



ଅରୁଣ-ତରୁଣ
ମହିମା ଗାଦି, ଢେଙ୍କାନାଳ




ISBN No. : 81-87968-30-3

# ଅମୃତ ବଚନ

ନୀତି ଶିକ୍ଷାମୂଳକ ଆପ୍ତବାଣୀ



ରଚନା :
ଡକ୍ଟର କୃତ୍ତିବାସ ନାୟକ

ପ୍ରକାଶକ :
ଅରୁଣ–ତରୁଣ
ମହିମା ଗାଦି, ଢେଙ୍କାନାଳ
ଫୋନ୍ : ୨୩୯୦୬୩
ମୋ : ୯୯୩୭୭୪୩୫୦୮
ପ୍ରଥମ ପ୍ରକାଶ : ୨୦୦୮
ମୁଦ୍ରଣ : ଜଗନ୍ନାଥ ପ୍ରୋସେସ୍, କଟକ–୨
ମୂଲ୍ୟ : ୪୦ ଟଙ୍କା ମାତ୍ର ।

**AMRIT BACHAN**

Author : Dr. Krutibash Nayak
First Edition : 2008
Price Rs. **40.00** *(Rupees Fourty Only)*

# ଅମୃତ ବଚନ

## ସୂଚୀ ପତ୍ର



❖ ❖ ❖

# ଅମୃତ ବଚନ

## ନିଜକଥା-

ଜୟ ଜଗନ୍ନାଥ ଜଗତର ନାଥ-
ଜୟ ଜଗତ ଜୀବନ,
ତୁମ୍ଭ କରୁଣାରେ *ଅମୃତ ବଚନ*-
କରୁ ଜଗତ କଲ୍ୟାଣ ।(୧)

ମହୁମାଛି ପରି ଅନେକ ଫୁଲରୁ-
ସଂଗ୍ରହ କରିଛି ମହୁ,
ସେହି ମହୁ ରୂପୀ ଅମୃତ ବାଣୀ ଏ-
ପାଠକ ପାଖକୁ ଯାଉ ।(୨)

ଯାହା ମୁଁ ପଢ଼ିଛି  ଯାହା ମୁଁ ଶୁଣିଛି-
ଯାହା ଅଙ୍ଗେ ଲିଭାଇଛି,
*ସଂଗ୍ରହ କରି ମୁଁ* ମହୁଫେଣା କରି-
ପାଠକ ପାଇଁ ରଖୁଛି ।(୩)

ଜୀବନରେ *ଏହି ଅମୃତ ବଚନ*-
ଦେଖାଇବ କିଛି ବାଟ,
ଏହି ବିଶ୍ୱାସରେ ପାଠକ ହିତରେ-
ବସାଇଛି ଜ୍ଞାନ ହାଟ ।(୪)

ହାଟର ସଉଦା ସାହିତ୍ୟ ବିଜ୍ଞାନ-
ପୁରାଣ ଶାସ୍ତ୍ରର କଥା,
ମନର ବିଜ୍ଞାନ, ବଚନ,ଦର୍ଶନ-
ରହିଅଛି ଲୋକକଥା ।(୫)

ମୋ ପ୍ରିୟ ପାଠକ ହୋଇବେ ଗ୍ରାହକ-
ନିଜେ ପଢି ପଢାଇବେ,
ଉପଯୁକ୍ତ ସ୍ଥାନେ କାଳ ପାତ୍ର ଦେଖି-
ଉପହାର ଭାବେ ଦେବେ ।(୬)

ଜୀବନ ଗଠନେ *ଅମୃତ ବଚନ*-
ନିଶ୍ଚୟ ସହାୟ ହେବ,
ନିଜ ପୁତ୍ର କନ୍ୟା ନାତି ନାତୁଣୀଙ୍କ-
ଶାସ୍ତ୍ର ଜ୍ଞାନ ବତାଇବ ।(୭)

## ନୀତିଶିକ୍ଷା, ଦର୍ଶନ, ମନସ୍ତତ୍ତ୍ୱ ଓ ଲୋକବାଣୀ

ବିଶ୍ୱାସ କରିବ ଈଶ୍ୱରଙ୍କୁ ସଦା-
ଯଦିଓ ଦେଖିନା ତାଙ୍କୁ,
ବିଶ୍ୱାସ କରିବ ସତ୍ୟକୁ ନିଶ୍ଚୟ-
ମିଥ୍ୟା ପଛେ ତାକୁ ଡାଙ୍କୁ ।(୮)

ବିଶ୍ୱାସ କରିବ ସୂର୍ଯ୍ୟଙ୍କୁ ନିଶ୍ଚୟ-
ପୂର୍ବରେ ଉଦୟ ହେବ,
ବିଶ୍ୱାସ କରିବ ବରଷା ହୋଇବ-
ନଦିଶୁ ପଛକେ ମେଘ ।(୯)

ବିଶ୍ୱାସ କରିବ ଶାନ୍ତିକୁ ଯଦିଓ-
ଅଶାନ୍ତି ଲଭିଛ କେବେ,
ବିଶ୍ୱାସ କରିବ ନିଜକୁ ଯଦିଓ-
ଅବିଶ୍ୱାସୀ ଭଳି ଲାଗେ ।(୧୦)

ସମର୍ପଣ ଭାବ ଥାଏ ଯା ହୃଦୟେ-
ଦୃଢ଼ ମନ ନେଇ ରହେ,
ପ୍ରତିକୂଳ ସ୍ଥିତି ତା ପାଇଁ ନିଶ୍ଚୟ-
ଅନୁକୂଳ ହୋଇଯାଏ ।(୧୧)

ଝୁଣ୍ଟି ପଡ଼ିଗଲେ ଭାବିନେବ ମୋତେ-
ପ୍ରଭୁ ଦେଲେ ଆଶୀର୍ବାଦ,
ଭୂମି ଛୁଇଁ ତାଙ୍କୁ ପ୍ରଣାମ କରିବି-
ତେଣୁ ଖସିଲା ମୋ ପାଦ ।(୧୨)

କୌତୂହଳେ କିବା ଅତି ବିଶ୍ୱାସରେ-
ଖୋଲିବନି ଗୁପ୍ତ କଥା,
ମିତ୍ର ହୋଇଲେ ବି ସେହି କଥା ପାଇଁ-
ଦେବ କେବେ ତୁଚ୍ଛା ବ୍ୟଥା ।(୧୩)

ଛେଳିର ଲଢ଼େଇ ଋଷିଙ୍କର ଶ୍ରାଦ୍ଧ-
ସକାଳ ମେଘ ଗର୍ଜନ,
ଘର କଳି ହୁଏ ଆରମ୍ଭ ପ୍ରବଳ-
ଶେଷରେ ଫଳଟି ଶୂନ ।(୧୪)

ନୀଚ କୁଳେ ଜାତ ଦରିଦ୍ରର ପୁତ୍ର-
ଭାଗ୍ୟ ବଳେ ହେଲେ ଧନୀ,
ମୂରୁଖର ପୁତ୍ର ହୋଇଲେ ପଣ୍ଡିତ-
ହେବେ ତୁଚ୍ଛା ଅଭିମାନୀ ।(୧୫)

ବିଚାରପତି ଯେ ଦୂରଦର୍ଶୀ ହେବେ-
ଥିବ ନ୍ୟାୟ୍ ଧର୍ମ ଗୁଣ,
ଲୋକାଚାରେ ଶ୍ରଦ୍ଧା ଉଚିତ ବିଚାର-
ସ୍ଥାନ କାଳେ ଥିବ ଜ୍ଞାନ ।(୧୬)

ବହିଗଲା ପାଣି ଫେରି ପାରେ ପୁଣି-
ସୁଯୋଗ ବି ଫେରି ପାରେ,
ସମୟ୍ ହାତରୁ ଖସିଗଲେ ଥରେ-
ଆଉ କି ହାତକୁ ଫେରେ?(୧୭)

ସମୟ୍‌ଠାରୁ କେ ବେଶି ମୂଲ୍ୟବାନ-
ନାହିଁ ବଳି ବଳବାନ,
ଅତୀତ ଭବିଷ୍ୟ ଅନାଗତ ଛାଡ଼ି-
ଧରି ରଖ ବର୍ତ୍ତମାନ (୧୮)

ଗରମ ଖିରିକୁ ପାଖରୁ ଖାଆନ୍ତି-
ଚାହାକୁ ପିଅନ୍ତି ଫୁଙ୍କି,
ବିପଦ ଆଶଙ୍କା ଯେଉଁଠି ରହିଛି-
ଆଗେଇବ ମାପିଚୁପି (୧୯)

ବିଜୁଳି ହେଉଛି ଆଲୋକ ପବନ-
ସକଳ ସୁଖର ସ୍ରୋତ,
ସେହି ସ୍ରୋତ ପୁଣି ଜୀବନକୁ ନିଏ-
ଚଞ୍ଚଳ କରିଲେ ଚିତ୍ତ (୨୦)

ଚିତା ଆଉ ଚିନ୍ତା ଦୁଇଟି ଶବଦ-
ମଣିଷକୁ ଜାଳି ଦିଏ,
ଚିତା ଜାଳେ ଶବ ଚିନ୍ତା ମଣିଷର-
ଜୀବନକୁ ଜାଳୁଥାଏ (୨୧)

ଶିବ ଶବଦରୁ ଇକାର ଉଠିଲେ-
ନୂଆ ଶବ୍ଦ ହୁଏ ଶବ,
ଇ କାରଟି ବ୍ରହ୍ମ ପିଣ୍ଡ ପରେ ଥାଏ-
ତା ବିନା ପ୍ରାଣୀ ନିର୍ଜୀବ (୨୨)

ଅଶୁଭ ଲକ୍ଷଣ ଲକ୍ଷ୍ୟ କରି ଯିଏ-
ତାକୁ ଶୁଭ ମଣିଥାଏ,
ସାହସ ପ୍ରେରଣା ନେଇ ଯେ ଲଢ଼ଇ-
ସିଏ ହିଁ ବିଜୟୀ ହୁଏ ।(୨୩)

ଆସକ୍ତି ବିହୀନ ଅଂହକାର ଶୂନ୍ୟ-
ଧୈର୍ଯ୍ୟବାନ ଯେଉଁ ନର,
କର୍ତ୍ତବ୍ୟରେ ରତ ନୁହେଁ ବିଚଳିତ-
ମଣିଷ ମଧ୍ୟରେ ସାର ।(୨୪)

ସୁଖ ଦୁଃଖ ପୁଣି ଜୟ ପରାଜୟ-
ଲାଭ ପରେ ଆସେ କ୍ଷତି,
ବେଶି ଦୁଃଖ ପାଏ ସୁଖ ବେଳେ ଯିଏ-
ମଉଜରେ ଥାଏ ମାତି ।(୨୫)

ଶିଶୁ ହୋଇଲେ ବି ଯୁକ୍ତି ଯୁକ୍ତ କଥା-
ଯଦି ଦେଉଥାଏ କହି,
ବୃଦ୍ଧର ଅଯଥା କଥାକୁ ତେଜିବ-
ଶିଶୁ କଥା ମାନିନେଇ ।(୨୬)

ଗୁରୁଙ୍କ ଆଦେଶ ପାଳେ ନାହିଁ ଯିଏ-
ଶତବାର ଛୁଏଁ ପାଦ,
ନାମ ସ୍ମରୁଥାଏ ନଥାଏ ଭକତି-
ସେ କାହୁଁ ପାଇବ ଭେଦ ।(୨୭)

କ୍ଷମତାକୁ କରି ବିକେନ୍ଦ୍ରୀ କରଣ-
କର୍ତ୍ତବ୍ୟକୁ ବାଣ୍ଟେ ଯିଏ,
ତଦାରଖ 'କରି ଦାୟିତ୍ୱ ସମ୍ଭାଳେ-
ସୁଶାସକ ଏକା ସିଏ ।(୨୮)

ତ୍ୟାଗ ପ୍ରେମ ମୂଲ୍ୟ ସମୟ ହିଁ ଜାଣେ-
ଲୋଡ଼ା ଧୈର୍ଯ୍ୟ ଦୃଢ଼ ଚିତ୍ତ,
ପ୍ରେମ ହିଁ ଅମର ପ୍ରେମ ହିଁ ଶାଶ୍ୱତ-
ପ୍ରେମର ନଥାଏ ଅନ୍ତ ।(୨୯)

ଜୀବନଟା ସିନା ମଣିଷର ରାଜ୍ୟ-
ମନ ହିଁ ରାଜା ପଣ,
ବୁଦ୍ଧି ତାର ମନ୍ତ୍ରୀ ବଳ ସେନାପତି-
ଧୈର୍ଯ୍ୟ ଶକ୍ତିଶାଳୀ ସୈନ୍ୟ ।(୩୦)

କାମ କ୍ରୋଧ ଲୋଭ ମୋହ ମାୟା ସଙ୍ଗେ-
ଶତ୍ରୁ ପରଶ୍ରୀକାତର,
ଚାଲିଛି ସଂଗ୍ରାମ ଅହରହ ଜାଣି-
ବିନ୍ଧ ଜ୍ଞାନ ରୂପୀ ଶର ।(୩୧)

ଯାହାଠାରୁ ପ୍ରିୟ ବଚନ ଚାହିଁବ-
ପୁଣି ଭଦ୍ର ବ୍ୟବହାର,
ଆଗ ତୁମେ ଯାଇ ତାଙ୍କରି ସହିତ-
ଭଲ ବ୍ୟବହାର କର ।(୩୨)

ନିଜ ତରଫରୁ ସଫେଇ ଦେବାକୁ-
ଇଚ୍ଛା କରିବନି କେବେ,
ଖଳ ଲୋକେ ତାକୁ ବୁଝିବେନି ପୁଣି-
ମିଛ ପ୍ରମାଣ କରିବେ ।(୩୩)

ଗୋଟିଏ ମିଛକୁ ଲୁଚେଇବା ପାଇଁ-
ଲକ୍ଷେ ମିଛ ଲୋଡ଼ା ହୁଏ,
ସତ କଥାଟିଏ ଖୋଲି କହିଦେଲେ-
ଗୋଟିଏ ଦୋଷରେ ଯାଏ ।(୩୪)

କଥାରେ କଥାରେ କହି ହେଇଯାଏ-
କେତେ ନକହିବା କଥା,
ଜିଭକୁ ଟିକିଏ ସମ୍ଭାଳି ରଖିଲେ-
ପଛକୁ ନଥାଏ ବ୍ୟଥା ।(୩୫)

ଦୋଷଦର୍ଶୀ ଯିଏ ଅଜ୍ଞାନରେ ଗଣା-
ତାକୁ ଦିଶେ ଖାଲି ତ୍ରୁଟି,
ଗୁଣଗ୍ରାହୀ ଜ୍ଞାନୀ ସୁନା ଖୋଜି କାଢ଼େ-
ହଟାଇ ଅଳିଆ ମାଟି ।(୩୬)

ଶରୀରର ଜ୍ୟୋତି ନୀରୋଗ ଲକ୍ଷଣ-
ମନଜ୍ୟୋତି ଶୁଦ୍ଧ ଜାଣ,
ବୁଦ୍ଧି ଜ୍ୟୋତି ଯଦି ଉଜ୍ଜ୍ୱଳ ହୋଇବ-
ମିଳିଯିବ ସଦଜ୍ଞାନ ।(୩୭)

ଶରୀର ଜ୍ୟୋତିରୁ ବଳ ମିଳିଥାଏ-
ଶୁଦ୍ଧରୁ ମିଳଇ ଶାନ୍ତି,
ବୁଦ୍ଧି ଜ୍ୟୋତି ଯାର ହୁଅଇ ଉଜ୍ଜ୍ୱଳ-
ତାର ହୁଏ ମୋକ୍ଷ ପ୍ରାପ୍ତି ।(୩୮)

ଈଶ୍ୱରଙ୍କ ପ୍ରତି ଆସ୍ଥା ତୁଟେଇଲେ-
ହୁଏ ନାହିଁ କିଛି କ୍ଷତି,
ଈଶ୍ୱର ଯା ପ୍ରତି ଆସ୍ଥା ହରେଇବେ-
ରହିବ ନାହିଁ ତା ସ୍ଥିତି ।(୩୯)

ଗୋଟିଏ କଥାକୁ ବୁଝେଇବା ପାଇଁ-
ଶିକ୍ଷକ ଘଣ୍ଟାଏ ଲୋଡ଼େ,
ସେହି କଥାଟିକୁ ଦଶ ମିନିଟରେ-
ଲେଖକ ଶବଦେ ଯୋଡ଼େ ।(୪୦)

କବି ହୋଇଥିଲେ ପଦିଏ ଗୀତରେ-
ବୁଝାଇ ଦିଏ ସହଜେ,
ଚିତ୍ରକର ତୂଳି ବୁଲେଇ ଆଣିଲେ-
ମନକୁ ମୋହେ ମଉଜେ ।(୪୧)

ଶିଶୁ ବୟସରେ ପୁଅ କହୁଥିବ-
ମୋ ବାପାଙ୍କୁ ସବୁ ଜଣା,
ଷୋହଳ ହୋଇଲେ କହିବ ବାପାଙ୍କୁ-
ଅନେକ କଥା ଅଜଣା ।(୪୨)

କୋଡ଼ିଏ ଛୁଇଁଲେ କହିବ ସେ ପୁଣି-
ମୁଁ ଜାଣେ ବାପାଠୁ ବେଶି,
ବାଇଶ ପରେ ସେ ବାପାଙ୍କ କଥାକୁ-
ଉଡ଼ାଇବ ହସି ହସି ।(୪୩)

ତିରିଶ ବେଳକୁ କହିବ ପୁଅଟି-
ସତ ଥିଲା କିଛି କିଛି,
ଚାଳିଶ ପୂରିଲେ ବାପାଙ୍କ କଥାଟି-
ହୋଇଥିବ ପୁଅ ନୀତି ।(୪୪)

ବାପା ଥିଲେ ଜ୍ଞାନୀ କହିବ ସେ ପୁଅ-
ଚାଲିବ ଯେବେ ପଚାଶ,
ତାଙ୍କୁ ଅନୁସରି କାମ କରିଥିଲେ-
ହୋଇଥାନ୍ତି ସୁପୁରୁଷ ।(୪୫)

ଦୁନିଆ ରୀତିକୁ ଲକ୍ଷ୍ୟ କରୁଥିବ-
ବଦଳିବ ସେହି ମତେ,
ପୁଅର ଦୋଷ କି ବାପାଙ୍କର ଦୋଷ-
କହିବନି କଦାଚିତେ ।(୪୬)

ପ୍ରଣାମ ନମସ୍ତେ ପୁଣି ନମସ୍କାର-
କାହାକୁ କହିବ ଶୁଣ,
ନମସ୍ତେ କହିବ ସାନଙ୍କୁ ଆଦରେ-
ବଡ଼ଙ୍କୁ କର ପ୍ରଣାମ ।(୪୭)

ନମସ୍କାର ଆଉ ଜୁହାର କହିବ-
ସମ ବୟସକୁ ଦେଖି,
ସମାନ ପଦବୀ ସମାନ ସ୍ତରରେ-
ନମସ୍କାର କୁହ ଡାକି ।(୪୮)

ସଫଳତା ପାଇଁ ନିଜର ହୃଦୟ-
ଆତ୍ମାକୁ କରିବ ଏକ,
ସେଥିରେ ମସ୍ତିଷ୍କ ବୁଦ୍ଧିମତା ଥିଲେ-
ପୂରଣ ହୋଇବ ଲକ୍ଷ୍ୟ ।(୪୯)

ମଣିଷ ନିଜର ଶତ୍ରୁ ହୋଇଥାଏ-
କରେ ସେ କ୍ଷତି ନିଜର ,
ବାହ୍ୟ ଶତ୍ରୁ ଯାହା କ୍ଷତି କରିପାରେ -
ତୁଳନା ହେବନି ତାର ।(୫୦)

ସାଧକ ସର୍ବଦା ଏକ ସ୍ଥାନେ ବସି-
ଦର୍ଶନ କରେ ଜଗତ,
ଜୀବନ ଯାତ୍ରାର ଗ୍ରୀଷ୍ମ କାଳ ପରେ-
କରେ ଧର୍ମ ବାରିପାତ ।(୫୧)

ଧନ୍ୟ ସେହି ନର କରେ ଯେ ଆଦର-
ଜ୍ଞାନୀ ଦାନୀ ଗୁଣୀ ଜନେ,
ପ୍ରାପ୍ତିପରେ ନିଜେ ଜଣାଏ ଯେ ନମ୍ରେ-
କୃତଜ୍ଞତା ପ୍ରତିଦାନେ ।(୫୨)

ଜୀବନ ସୀମିତ କର୍ତ୍ତବ୍ୟ ଅସୀମ-
ସଂକଳ୍ପକୁ ପୁଞ୍ଜି କର,
ବିବେକ ଜ୍ୟୋତିରେ ଯାତ୍ରା କରୁଥିଲେ-
ଅସମ୍ଭବ ହେବ ଦୂର ।(୫୩)

ବିଷ୍ଣୁଙ୍କ ହସ୍ତରେ ଶଙ୍ଖ ଚକ୍ର ଗଦା-
ପଦ୍ମଫୁଲ ପାଏ ଶୋଭା,
ମାନବ ଜାତିକୁ ବୁଝାଏ ଏ ଚାରି-
ଗୁଣକୁ ବହିବ ସଦା ।(୫୪)

ଶଙ୍ଖ ସଚେତନ ପଦ୍ମଫୁଲ ପ୍ରେମ-
ଚକ୍ର ଚଞ୍ଚଳ ପ୍ରତୀକ,
ଗଦା କହେ ଯାହା ଅଧର୍ମ ଅନୀତି-
ତାକୁ ବାଧା ଦେଇ ରଖ ।(୫୫)

ଶାନ୍ତିକୁ କେ କେବେ ଖୋଜି ପାଇନାହିଁ-
ଖୋଜିଲେ ମିଳିବ ନାହିଁ,
ନିଜ ଅନ୍ତରକୁ ଉଦାର କରିଲେ-
ଶାନ୍ତିକୁ ପାରିବ ଛୁଇଁ ।(୫୬)

ନିଜ ପ୍ରକୃତିକୁ ବାହାର ସହିତ-
କରିବ ଯେ ସମତୁଳ,
ଜୀବନ ତାହାର ହୋଇବ ସହଜ-
ସରଳ ମଉଜ ଖେଳ ।(୫୭)

ଭଲ ଚିକିତ୍ସକ ଚିହ୍ନିବ ଅଭିଜ୍ଞ-
ହୋଇଥିବ ଶ୍ରମବାନ,
ସତ୍ୟବାଦୀ ଧୀର ଶାସ୍ତ୍ରରେ ନିପୁଣ-
ନିଦାନରେ ଥିବ ଧ୍ୟାନ ।(୫୮)

ଯେଉଁଠି ନଥିବେ ଧନୀ ମାନୀ ଜ୍ଞାନୀ-
ଚିକିତ୍ସକ ସେବାକାରୀ,
ଜଳ ଜମି ପୁଣି ସବୁଜ ନଥିଲେ-
ସେ ଜାଗା ଅଦରକାରୀ ।(୫୯)

ଦଣ୍ଡ ଦେବାବେଳେ ବିଚାର କରିବ-
ଅପରାଧ ଗଭୀରତା,
ଅପରାଧୀ ଯଦି ଅଧମ ଅଜ୍ଞାନ-
ରଖିବ ତାହାର ମଥା ।(୬୦)

ଦିନେ ଘୁଷୁରିଟି ଗାଈକୁ କହିଲା-
ପଚାରିବି କଥାଟିଏ,
ତମେ ତ ଯେମିତି ମୁଁ ବି ସେମିତି-
ଘରେ ପୋଷା ହୋଇଥାଏ ।(୬୧)

ମଣିଷ କାହିଁକି ତମକୁ ଏମିତି-
ପୂଜା କରି ଭଲ ପାଏ?
ମୋତେ କିଆଁ ପୁଣି ଘୃଣା କରନ୍ତି ସେ-
ମୋର ମାଂସକୁ ଯେ ଖାଏ ।(୬୨)

ତୁହି ଦେଉ କ୍ଷୀର ମୁହିଁ ଦିଏ ମାଂସ-
ମୋ ତ୍ୟାଗ ମଣିଷ ଜାଣେ,
ତଥାପି ଏମିତି ଅନ୍ୟାୟ ମୋ ପ୍ରତି-
କାହିଁକି ହେଉଛି ଶୁଣେ ।(୬୩)

ହସି କହେ ଗାଈ ଜୀବ ଥାଉ ମୁହିଁ-
ମଣିଷକୁ ଦିଏ କ୍ଷୀର,
ଜୀବ ଗଲା ପରେ ଜାଣି ପାରୁ କି ତୁ-
କିଏ ମାଂସ ଖାଏ କାର?।(୬୪)

ଜାଣି ଜାଣି ଯିଏ ଦାନ କରିଥାଏ-
ଧାର୍ମିକ ଜନରେ ଗଣା,
ମଲା ପରେ କିଏ କିସ ନେଇଯାଏ-
ଗଲା ଲୋକକୁ ଅଜଣା ।(୬୫)

ରାମାୟଣକୁ ଯେ ଇତିହାସ ଭାବି-
ପାଠ କରେ ଶ୍ରଦ୍ଧା ଭରି,
ତହିଁରୁ ପାଏ ସେ ଈଶ୍ୱରଙ୍କ ସତ୍ତା-
ପାପତାପ ଯାଏ ହରି ।(୬୬)

ତାକୁ ପୁଣି ଯିଏ ପୁରାଣ ଭାବରେ-
ବିଶ୍ୱାସରେ ପାଠ କରେ,
ବହୁ ଇତିହାସ ତଥ୍ୟ ଜ୍ଞାନ ପୁଣି-
ମିଳେ ତାକୁ ଧୀରେ ଧୀରେ ।(୬୭)

ଗୁଣହୀନ ଲୋକ ନିୟମିତ ଯଦି-
ଗୁଣୀର ପ୍ରଶଂସା କରେ,
ଗୁଣର ପ୍ରଭାବେ ପ୍ରଶଂସକ ଗୁଣୀ-
ହୁଏ କିଛି ଦିନ ପରେ ।(୬୮)

ନିଜର ପ୍ରଶଂସା ଅତି ପରିଚୟ-
ନଷ୍ଟ କରେ ଗଉରବ,
ଇନ୍ଦ୍ର ରାଜା ମଧ୍ୟ ଛୋଟ ହୋଇଯିବେ-
ଥାଉ ଯେତେ ସଉରଭ ।(୬୯)

ସକାଳର ସୂର୍ଯ୍ୟ ରକ୍ତିମା ଆଭାରେ-
ହସଇ ଉଦୟ ବେଳେ,
ଅସ୍ତଗାମୀ ସୂର୍ଯ୍ୟ ବିଦାୟ ବେଳାରେ-
ପୁଣି ହସେ ଅସ୍ତାଚଳେ ।(୭୦)

ଶିଶୁ ବୟସରେ ହସିଅଛୁ କେତେ-
କାହାଠାରୁ କେତେ ପାଇ,
ଗଲାବେଳେ ପୁଣି ହସି ହସି ଯିବା-
କେଉଁଠି ଋଣୀ ନହୋଇ ।(୭୧)

ବିଦ୍ୟା ଅଧ୍ୟୟନ କରିବ ଯାହାକି-
ଆଜୀବନ କାମ ଦେବ,
ପର ଉପକାରେ ଲାଗୁଥିବ ପୁଣି-
ଜୀବନ ବଞ୍ଚାଉଥିବ ।(୭୨)

ଏହି ସଂସାରଟି ବିରାଟ ଦର୍ପଣ-
ଦେଖିନିଅ ନିଜ ରୂପ,
ସୁନ୍ଦର ଦିଶିବ ପୁଣ୍ୟ କରିଥିଲେ-
ଅସୁନ୍ଦର କରେ ପାପ ।(୭୩)

ନିର୍ଦ୍ଧନ ଜନକୁ ମିତ ବ୍ୟୟିତାର-
ଦେବନାହିଁ ଉପଦେଶ,
ସେହି ଉପଦେଶ ତାଙ୍କ ପ୍ରତି ହେବ-
ଦାରିଦ୍ର୍ୟକୁ ଉପହାସ ।(୭୪)

ମଣିଷର ପାଇଁ ଚରିତ୍ର ପରାଏ-
ନାହିଁ କିଛି ଅଳଙ୍କାର,
ବିଦ୍ୟା ସମ ଧନ ଦାନ ସମ ପୁଣ୍ୟ-
ନାହିଁ ତୁଳନା ତାହାର ।(୭୫)

ପ୍ରତିବାଦ ଦ୍ୱାରା ବିକାଶ ହୁଏନା-
ଲୋଡ଼ା ହୁଏ ସହାୟତା,
କଠୋର ସାଧନା ଆଣେ ସଫଳତା-
ନୁହେଁ ଭାବ ପ୍ରବଣତା ।(୭୬)

ଚାଷ କାର୍ଯ୍ୟ ସିନା ହୁଏ ତରତରେ-
ମଠେଇ କର ବେପାର,
ସଫଳତା ମିଳେ ସବୁ ବେପାରରେ-
ଥିଲେ କାଗଜ ପତର (୭୭)

କଣ୍ଟା ଦ୍ୱାରା ସିନା କଣ୍ଟା କଢ଼ାଯାଏ-
ଏକଥା ସଭିଙ୍କୁ ଜଣା,
ପଙ୍କ ନେଇ କେହି ପଙ୍କ ଧୋଇନାହିଁ-
ପାପକୁ ପାପ ଧୁଏନା (୭୮)

ସାଧନା ରହିତ କାର୍ଯ୍ୟରୁ ପ୍ରସିଦ୍ଧି-
ମିଳିପାରେ କଉଶଳେ,
ସାଧନାର ବିନା ସିଦ୍ଧିଲାଭ ନାହିଁ-
ଏହି ଭବ ଭୂମି ତଳେ (୭୯)

କାପୁରୁଷ ଭୀରୁ ସାଗର ତରଙ୍ଗ-
ଦେଖିଲେ ଯାଆନ୍ତି ଡରି,
ଲହଡ଼ିରେ କାଳେ ବୁଡ଼ିଯିବେ ଭାବି-
ବୁଡ଼ାଇ ଦିଅନ୍ତି ତରୀ । (୮୦)

ଜିତିବା ଲୋକଟି କହୁଥାଏ ସଦା-
ଖୋଜି କାଢ଼ିବାକୁ ହେବ,
ହାରିବା ଲୋକଟି କହିବ ମିଛରେ-
ଖୋଜିଲେ କି ଲାଭ ହେବ?।(୮୧)

ଜିତିବା ଲୋକଟି କରିଥିଲେ ତ୍ରୁଟି-
ମାନି କରେ ସଂଶୋଧନ,
ହାରିବା ଲୋକଟି ମାନିବନି କେବେ-
କହିବ ତୁମର କାମ ।(୮୨)

ବିଜୟୀ ସର୍ବଦା ସମସ୍ୟା ଭିତରେ-
କାର୍ଯ୍ୟ କରେ ସମ୍ପାଦନ,
ପରାଜିତ କେବେ ସମସ୍ୟା ଦେଖିଲେ-
ଛାଡ଼ି ଚାଲିଯାଏ ସ୍ଥାନ ।(୮୩)

ପ୍ରତିଶ୍ରୁତିବଦ୍ଧ ବିଜୟୀ କହଇ-
ମୋ କାମ ସୁନ୍ଦର ହେବ,
ପରାଜୟୀ କହେ ଅନ୍ୟଠାରୁ ମୁହିଁ-
ଖରାପ କେ କହିଦେବ? (୮୪)

ନିଜଠାରୁ ବଡ଼ ଲୋକଠୁ ଶିଖିବା-
ଜିତିବା ଲୋକର ଗୁଣ-
ହାରିବା ଲୋକଟି ଖୋଜି ଦେଖୁଥାଏ-
କେଉଁଠି ଅଛି କା ଖୁଣ ।(୮୫)

ସମୟ ନଦେଖି ଆରମ୍ଭ କରେ ଯେ-
କିତିବା ଲକ୍ଷଣ ତାର,
ଛାଡ଼ ଛାଡ଼ କହି ଭୁଲି ଯାଏ ଯିଏ-
ହାରିବା ତା ପାଇଁ ସାର ।(୮୬)

କାର୍ଯ୍ୟ ପନ୍ଥା ପୁଣି ଅନେକ ରହିଛି-
କିତିବା ଲୋକକୁ ଜଣା,
ହାରିବା ଲୋକଟି ଜାଣେ ଏକ ପନ୍ଥା-
ଛାଡ଼ିଲେ ହୁଅଇ ବଣା ।(୮୭)

ସୃଷ୍ଟିରେ ଯେତେକ ଜୀବ ଜନମନ୍ତି-
କାମ ଅଛି ସଭିଙ୍କର,
କିଏ ହୁଏ ଖାଦ୍ୟ କିଏ ବା ଖାଦକ-
କେହି ନୁହନ୍ତି ଅମର ।(୮୮)

ଲୋଭହୀନ ପୁଣି କ୍ରୋଧହୀନ ଲୋକ-
ସର୍ବଦା ଯେ ପ୍ରିୟ ଭାଷୀ,
କେହି ଶତ୍ରୁ ତାର ହୋଇ ରହିବେନି-
ବଞ୍ଚିବ ସେ ହସି ହସି ।(୮୯)

ଈଶ୍ୱର ବୁଝନ୍ତି ମନର ଭାଷାକୁ-
ନୁହେଁ ସଂସ୍କୃତ ଇଂରାଜୀ,
ଗୀତ କି କଥାରେ ଧୀରେ ଉଚ୍ଚ ସ୍ୱରେ-
ସବୁଥିରେ ପ୍ରଭୁ ରାଜି ।(୯୦)

ଏ ଜଗତ ମାୟା କୁହେଳିକାମୟ-
ମଣିଷ ମାଲିକ ତାର,
ଭାବ ଜଗତର ଈଶ୍ୱର ମାଲିକ-
ତାଙ୍କୁ ହିଁ ନିଜର କର ।(୯୧)

ବିବେକ ଡାକକୁ ଗୁରୁତ୍ୱ ଦିଏ ଯେ-
ଆଦର୍ଶ ମଣିଷ ହୁଏ,
ତାକୁ ହିଁ ସମାଜ ମହତ ଜନରେ-
ମାନି ପୂଜା କରୁଥାଏ ।(୯୨)

ଗମ୍ଭୀର ଦିଶିବା ମଉନେ ବସିବା-
ବିଜ୍ଞ ପରିଚୟ ନୁହେଁ,
ଚତୁର ଚଞ୍ଚଳ ବୁଦ୍ଧିଆ ନୁହଁନ୍ତି-
ଧୂର୍ତ୍ତରେ ସେ ଗଣା ହୁଏ ।(୯୩)

ଥିଲେ ଥାଉ ପଛେ ଯେତେ ଭଲ ଗୁଣ-
ନପାଇଲେ ସଦଗୁଣ,
ଚରିତ୍ର ନଥିଲେ ସବୁ ତ ଅସାର-
ବୃଥା ହୋଇବ ଜୀବନ ।(୯୪)

ପର ଉପଦେଶ ମନଦେଇ ଶୁଣି-
କରିବ ତାକୁ ସମ୍ମାନ,
ବିଚାର ନକରି ଅନ୍ଧ ପରି ତାକୁ-
କରିବ ନାହିଁ ଗ୍ରହଣ ।(୯୫)

ଆଳସ୍ୟ ନିରାଶା ତଳକୁ ଟାଣନ୍ତି-
ଫଳ ସଦା ପରାଜୟ,
ଦ୍ୱନ୍ଦ ମନେ ଆସେ ନାସ୍ତିକ ଭାବନା-
ସବୁ କାର୍ଯ୍ୟେ ଲାଗେ ଭୟ ।(୯୬)

ଈଶ୍ୱରୀୟ ଦିବ୍ୟ ବିଭୂତିରେ ଭରା-
ଆତ୍ମା ପ୍ରତ୍ୟେକ ପ୍ରାଣୀର,
ଦିବ୍ୟ ଚେତନାର ଆଶ୍ରୟ ସ୍ଥଳଟି-
ରକ୍ତ ମାଂସର ଶରୀର ।(୯୭)

ସୁଖ କିମ୍ବା ଦୁଃଖ ଚିରସ୍ଥାୟୀ ନୁହେଁ-
ଚକ୍ର ପରି ଘୂରୁଥାଇ,
ଆଜିର ଆନନ୍ଦ କାଲିକୁ ବିଷାଦ-
ଦୁନିଆର ନୀତି ଏହି ।(୯୮)

ମୃତ୍ୟୁ ସହ ଆମେ ପ୍ରତିଦିନ ଭେଟୁ-
ଅଜାଣତେ ଅଦେଖାରେ,
ଠକିଗଲେ କିବା ଅପମାନେ ପୁଣି-
ବିଛଣାକୁ ଗଲା ପରେ ।(୯୯)

ସ୍ୱାଧୀନତା କିବା ନିଜ ଅଧିକାର-
ଯାଚି ଦିଏ ନାହିଁ କେହି,
ସେଥିପାଇଁ ଲୋଡ଼ା ତ୍ୟାଗ ଓ ସଂଗ୍ରାମ-
ରକ୍ତ ନଦୀ ଯାଏ ବହି ।(୧୦୦)

ସତ୍ୟ ଅଭିଯାନେ ବାହାରି ପଡ଼ିଲେ-
ଲୋଡ଼ା ଧୈର୍ଯ୍ୟ ନିଷ୍ଠା ତ୍ୟାଗ,
ସଫଳତା କେବେ ମିଳୁ ବା ନମିଳୁ-
ବିପଦେ ପଡ଼ିବ ଆଗ ।(୧୦୧)

ସତ୍ୟ ପଥେ ଥିଲେ ସଦା ଜୟ ହୁଏ-
ସତ୍ୟ ପରମ ଈଶ୍ୱର,
ସତ୍ୟ ଚିରନ୍ତନ ସତ୍ୟ ହିଁ ଶାଶ୍ୱତ-
ବିକଳ୍ପ ନାହିଁ ସତ୍ୟର ।(୧୦୨)

ଗଦା ପ୍ରହାରରେ ଯାହା ହୋଇନାହିଁ-
ଛୁଇଁ ଦେଲେ ହୋଇଯାଏ,
ଖଣ୍ଡାର ଧାରରେ ଯାହା କଟିନାହିଁ-
ତାକୁ କଥା କାଟିଦିଏ ।(୧୦୩)

ଯେତିକି ହୁଏନା ଟାଣ କଥା କହି-
ଫିଟି ଫିଟି ଚାବୁକରେ,
ତାଠାରୁ ଅଧିକ ସହଜେ ମଉକେ-
ମିଠା କଥା କରିପାରେ ।(୧୦୪)

କୋମଳ କଥାରେ ବିଫଳ ହୋଇଲେ-
ଲୁହା ଦେଖି ପାଣି ଦେବ,
କେଉଁଠି କଠୋର କେଉଁଠି ମଧୁର-
କେବେ ପୁଣି ଦଣ୍ଡ ଦେବ ।(୧୦୫)

ପୂର୍ବ ପୁରୁଷର ସଦଗୁଣ ନେଇ-
ଯିଏ ହୋଇଥାଏ ଜାତ,
ଲାଗିରହେ ପୁଣି ପର ଉପକାରେ-
ସେହି ଏକା ଭାଗ୍ୟବନ୍ତ ।(୧୦୬)

ଧନରେ ଗରିବ ନିର୍ଦ୍ଧନ ବୋଲାଏ-
ଦରିଦ୍ର ମନ ଗରିବ,
ଲକ୍ଷ୍ୟହୀନ ଭାବେ କାଟେ ଯେ ଜୀବନ-
ଦୁଃଖେ ତା ଦିନ ସରିବ ।(୧୦୭)

ପ୍ରତିକୂଳ ଗତି ଦୃଢ଼ କରେ ମନ-
ଶେଷରେ ହୁଏ ସଫଳ,
ପଳାୟନ ପନ୍ଥୀ ପରାଜିତ ମନ-
ସର୍ବଦା ଥାଏ ଦୁର୍ବଳ ।(୧୦୮)

ଦୟାଭାବ ବୁଝେ ବୃକ୍ଷ ଲତା ପ୍ରାଣୀ-
ଦୟା ପାଇଁ ନାହିଁ ଭାଷା,
ଦୟା ଥିଲେ କ୍ଷମା ଆସେ ବଳେ ବଳେ-
ଦୟାରୁ ଜନମେ ଆଶା ।(୧୦୯)

ଅନ୍ନ ଜଳ କିବା ଆଶ୍ରୟ ଦେଇ ଯେ-
ଅଶେଷ ପ୍ରାଣୀ ବଞ୍ଚାଏ,
ଧର୍ମ କର୍ମ ଜ୍ଞାନ ପୁରାଣ ପଠନ-
ତା ପାଇଁ କି ଲୋଡ଼ା ହୁଏ?।(୧୧୦)

ସ୍ୱାର୍ଥପର ସଦା ନିଜ କଥା ଭାବେ-
ସଭିଏ ତା ପାଇଁ ପର,
ସ୍ୱାର୍ଥ ପାଇଁ କରେ ଆକ୍ରମଣ ତାକୁ-
ଯିଏ କରେ ଉପକାର ।(୧୧୧)

ଅନ୍ନ ମୁଠାକର କି ଶକତି ଅଛି-
କଣା ପଡ଼େ ଥିଲେ ଭୋକେ,
ଜୀବ କଥା ଛାଡ଼ ତବଲା ବାଜଇ-
କିରଣ ଥିଲେ ତା ମୁଖେ ।(୧୧୨)

ମନର ଅଶାନ୍ତି ଦୂର କରିବାକୁ-
ନିଜେ ଭଲ ଭାବିନିଅ,
କାହାରି ତ କିଛି କ୍ଷତି କରିନାହିଁ-
ସମସ୍ତେ ମୋହର ପ୍ରିୟ ।(୧୧୩)

ମୁଁ ସଦା ପ୍ରସ୍ତୁତ ବଦଳିବା ପାଇଁ-
ସୁବର୍ଣ୍ଣ ପରି ନରମ,
ଲୁହା ପରି ଟାଣ ହୋଇବି କାହିଁକି-
ଲୋଡ଼ା ପ୍ରହାର ଗରମ ।(୧୧୪)

ପଛ କଥା ଯେତେ ଭୁଲିଯିବି ସିନା-
ନିଜକୁ ସୁଧାରି ନେଇ,
ଅନ୍ୟ ଦୋଷ ଯାହା ଖୋଜିବା ଆଗରୁ-
ନିଜକୁ ଦେବି ଅନାଇଁ ।(୧୧୫)

ସହଜ ଲାଗଇ କାର୍ଯ୍ୟ କରିବାର-
କଉଶଳ ଶିଖିଥିଲେ,
କାର୍ଯ୍ୟର ଗୁରୁତ୍ୱ ପ୍ରାଥମିକତାକୁ-
ସଜାଇବା ଜାଣିଗଲେ ।(୧୧୬)

ମଣିଷ ଜନମ ସୁଖ ପାଇଁ ନୁହେଁ-
ନୁହେଁ ଅର୍ଥ କମାଇବା,
ଧନ୍ୟ ହୁଏ ସେହି ନିଜ ଧନ ଦେଇ-
କରେ ଯିଏ ପର ସେବା ।(୧୧୭)

ପ୍ରଭୁ ଦେଇଛନ୍ତି ଦୁଇଗୋଟି ହସ୍ତ-
ଗୋଟିଏ ନିଜର ପାଇଁ,
ଅନ୍ୟ ହସ୍ତ ଧନ ଶ୍ରମ ଆଉ କର୍ମ-
ଲାଗୁ ପର ସେବା ପାଇଁ ।(୧୧୮)

ଅମରତ୍ୱ ଭାବ ମଣିଷକୁ ନିଏ-
ଆଧ୍ୟାତ୍ମିକ ପଥ ଦେଇ,
ଅମର ରହିବି ଅଭିଳାଷ ଥିଲେ-
ଭଲ କାମ କରେ ସେହି ।(୧୧୯)

ମୃତ୍ୟୁ ପାଇଁ ଯିଏ ସର୍ବଦା ପ୍ରସ୍ତୁତ-
ଉପଭୋଗ କରେ ସେହି,
ମୃତ୍ୟୁ ତା ଦୁଆରେ ଠିଆ ହୋଇଥାଏ-
ଭୟରେ ବିସ୍ମିତ ହୋଇ ।(୧୨୦)

ପଳାଶ ଫୁଲଟି ବାସହୀନ ବୋଲି-
କିଏ ତାକୁ ଭଲପାଏ?
ନାଲି ଟହ ଟହ ଦୂରକୁ ଦିଶଇ-
ତଥାପି ଅଲୋଡ଼ା ସିଏ ।(୧୨୧)

ପଳାଶର ପରି ଅନେକ ମଣିଷ-
ଦିଶନ୍ତି ଖାଲି ସୁନ୍ଦର,
ଗୁଣ ଜ୍ଞାନ କିଛି ନଥିବାରୁ ତାଙ୍କ-
ବଞ୍ଚିବା କେବଳ ସାର ।(୧୨୨)

ଆମ୍ବ ଗଛଟିଏ ବଉଳରେ ଭରେ-
ଖଟା ମିଠା ଫଳ ଦେଇ,
ବଉଳ ବାସଇ ଫଳ ବି ବଢ଼ିଆ-
ଫଳ ବୃକ୍ଷ ରାଜା ସେହି ।(୧୨୩)

ପଣସ ଗଛରେ ଫୁଲ ଫୁଟେ ନାହିଁ-
ଡାଳରୁ ଫଳଇ ଫଳ,
ସେହି ପରି କିଛି ମଣିଷ ବାଲ୍ୟରୁ-
ଅରଜନ୍ତି ଧର୍ମ ବଳ ।(୧୨୪)

ଏହି ସଂସାରକୁ ଆସନ୍ତି ସର୍ବଦା-
ତିନି ଜାତିର ମଣିଷ,
କିଏ ଖାଲି ଫୁଟେ କିଏ ଫୁଟି ଫଳେ-
କେ ଫଳେ ଯଥା ପଣସ ।(୧୨୫)

ଆକାଶ କହୁଛି ମୋ ଉପରେ ପୁଣି-
ଅଛି କେତେ ଗ୍ରହ ତାରା,
ମୋତେ ବଡ଼ ବୋଲି ଭାବିବନି କେବେ-
ଦୁଃଖ ଶୂନ୍ୟତାରେ ଭରା ।(୧୨୬)

ବସୁଧା କହୁଛି ସହୁଛି ବୋଲି ମୁଁ-
ରହିଛି ସବୁଠୁ ତଳେ,
ସବୁ ଦେବ ଦେବୀ ଉପରେ ଥିଲେ ବି-
ଜନମନ୍ତି ମୋର କୋଳେ ।(୧୨୭)

ଗଛ କହେ ମୁହିଁ ବାସ ଚହଟାଇ-
ସଞ୍ଜକୁ ମଉଳି ଯାଏ,
କେ କହେ ସୁନ୍ଦର କେ କହେ ବେକାର-
ମୋର କାମ କରୁଥାଏ ।(୧୨୮)

ଗୀତ ଗାଇ ଗାଇ ପାଣି ଯାଏ କହି-
ମୁହିଁ ପ୍ରାଣୀର ଜୀବନ,
ନାହିଁ କେ ମୋହର ପର ଆପଣାର-
ସଭିଙ୍କ ପାଇଁ ସମାନ ।(୧୨୯)

ପବନ କହଇ ମୁଁ ସିନା ବହଇ-
ଜଗତ ମଙ୍ଗଳ ପାଇଁ,
କେଉଁଠି ତୋଫାନ କେଉଁଠି ଜୀବନ-
ନିଶ୍ୱାସ ପ୍ରଶ୍ୱାସ ହୋଇ ।(୧୩୦)

ମାଆ କହେ ମୁହିଁ ସବୁ ଦେଇପାରେ-
ଛୁଆର ଜୀବନ ପାଇଁ,
ବଡ଼ ହେଲେ ସିଏ ସୁଖେ ବଞ୍ଚି ରହୁ-
ମୋର କିଛି ଲୋଡ଼ା ନାହିଁ ।(୧୩୧)

ମଣିଷ କହୁଛି ସବୁ ମୋତେ ଲୋଡ଼ା-
କାହାରିକୁ ଦେବି ନାହିଁ,
ସୁନ୍ଦରକୁ କରି ଦେବି ଛାରଖାର-
ମରିବି ପଛକେ ମୁହିଁ ।(୧୩୨)

ଅପଥେ କୁପଥେ ଯାଇଥାଏ ଯିଏ-
ସିଏ ପାଏ ତିରସ୍କାର,
ତିରସ୍କାର ପଛେ ପାଇଥାଉ କେବେ-
କରେ କିଛି ଆବିଷ୍କାର ।(୧୩୩)

ନୀତିବାନ ଜ୍ଞାନୀ ପଣ୍ଡିତ ଶାସ୍ତ୍ରଜ୍ଞ-
ନିନ୍ଦାକୁ ଡରନ୍ତି ନାହିଁ,
ଧନ ହାନୀ ପ୍ରାଣ ହାନୀକୁ ନଡ଼ରି-
ନ୍ୟାୟ ମାର୍ଗେ ଥାନ୍ତି ରହି । (୧୩୪)

ସର୍ପ ଗରଳଠୁଁ ମଣିଷ ଗରଳ-
ଆହୁରି ଉତ୍କଟତର,
ସର୍ପ ଗରଳକୁ ନଡରିଲ ନାହିଁ-
ଖଳଜନେ ବେଶି ଡର ।(୧୩୫)

ସଂଘର୍ଷ ବିହୀନ ମଣିଷ ଜୀବନ-
ହୁଅଇ ଅଥର୍ବ ପଙ୍ଗୁ,
ଅଯଥା କାର୍ଯ୍ୟରେ କରେ ଯେ ସାହାଯ୍ୟ-
ନୁହେଁ ସେ ଅସଲ ବନ୍ଧୁ ।(୧୩୬)

ସଂଘର୍ଷ କରିଲେ ଯୋଗ୍ୟ ହୁଏ ଶିଶୁ-
ସଂଘର୍ଷରୁ ମିଳେ ଫଳ,
ସଂଘର୍ଷ ନଥିଲେ ଦୁର୍ବଳ ହୋଇବ-
ଦେହ ଆଉ ମନ ବଳ ।(୧୩୭)

ମଣିଷ ଭିତରେ ବିଭେଦ କରଇ-
ଧର୍ମ ଜାତି ବର୍ଣ୍ଣ ଭେଦ,
ସମାଜକୁ ଭାଙ୍ଗେ ଗୁରୁବାଦ ପୁଣି-
ଆତଙ୍କ ସନ୍ତ୍ରାସବାଦ ।(୧୩୮)

ସ୍ୱାର୍ଥର ବନିତା ତୋଷାମଦ ସିନା-
ମିଥ୍ୟା ଭୟ ଭାଇ ତାର,
ଏ ତିନିହେଁ ମିଶି ଷଡ଼ଯନ୍ତ୍ର କଲେ-
ସ୍ୱାର୍ଥ କରେ ଛାରଖାର ।(୧୩୯)

କଳହ ପ୍ରିୟ ଯେ ଯୁକ୍ତି ଜାଣେ ନାହିଁ-
ନିଜ କଥା ଖାଲି କହେ,
ଅପ୍ରିୟ ବଚନ କଟୁ ଭାଷା ତାର-
ଜିଭର ଅଗରେ ଥାଏ ।(୧୪୦)

ପ୍ରଭୁ ଆଶୀର୍ବାଦେ ଗୁଣୀ ଜ୍ଞାନୀ ଜନ-
ବନ୍ଧୁ ଭାବେ ମିଳିଥାଏ,
ହତଭାଗ୍ୟ ଏକା ଥିଲେ ବି ନିକଟେ-
ନିଜେ ହିଁ ଦୂରେଇ ରହେ ।(୧୪୧)

ଅନ୍ୟଠାରେ ଥିବା ଭଲ ଗୁଣକୁ ଯେ-
ଦେଖି ଚିହ୍ନି ପାରେନାହିଁ,
ସେ କାହୁଁ ଜାଣିବ ନିଜ ସଦଗୁଣ-
ଅହଂକାରୀ ଲୋକ ହୋଇ ।(୧୪୨)

ଠକ କାମଚୋର ଭିକାରି ଅଯୋଗ୍ୟ-
ସଦା ଅନୁଗ୍ରହ ପ୍ରାର୍ଥୀ,
ନିଜକୁ ସେମାନେ ମଣନ୍ତି ଚତୁର-
ଲୋକେ ଧିକ କହିଥାନ୍ତି ।(୧୪୩)

ସାହିତ୍ୟକୁ କେବେ ମନେ କରନାହିଁ-
ଅଲୋଡ଼ା ସୁଖର ଫୁଲ,
ଜାତିକୁ ଏ ପୁଣି ମନ୍ତ୍ର ଦେଇପାରେ-
ଜାଳି ମୁକ୍ତିର ମଶାଲ ।(୧୪୪)

ମନର ଅଧୀନ ମଣିଷ ଇନ୍ଦ୍ରୀୟ-
ପବନ ଅଧୀନ ମେଘ,
କାଳର ଅଧୀନ ଏ ପ୍ରାଣୀ ଜଗତ-
ଅନ୍ନର ଅଧୀନ ଜୀବ ।(୧୪୫)

ଅନୁକମ୍ପା ଆଉ ଆନନ୍ଦ ଆଧାରେ-
ବୀଜ କରିଲେ ରୋପଣ,
କର୍ମ ରୂପୀ ବୃକ୍ଷ ଯେଉଁ ଫଳ ଦେବ-
ତାହା ହେବ ବହୁ ଗୁଣ ।(୧୪୬)

ତ୍ୟାଗ ଭାବନାରେ କର୍ମ କରିଥିଲେ-
ପ୍ରାପତ ଫଳ ମିଳଇ,
କ୍ଷେତକୁ ଟିକିଏ ଶ୍ରଦ୍ଧା ଦେଇଥିଲେ-
କ୍ଷେତ ଫସଲ ଢ଼ାଳଇ ।(୧୪୭)

ବିଶ୍ୱାସ ବର୍ଦ୍ଧକ ଚିନ୍ତା ଚେତନାରେ-
ପୁଷ୍ଟ କର ନିଜ ମନ,
ମନ ବଗିଚାରେ ଫୁଟିବ କୁସୁମ-
ପ୍ରେରଣା ତାହାର ନାମ ।(୧୪୮)

ନିଜ ମତାମତ ପ୍ରଦାନ କରିବ-
ଶୁଣି ସାରି ସବୁ କଥା,
ସଂଯତ ହୋଇଲେ ସଭିଙ୍କୁ ସୁନ୍ଦର-
ମନେ ଲାଗେନାହିଁ ବ୍ୟଥା ।(୧୪୯)

ଅଧ୍ୟୟନ କିବା ପ୍ରବଚନ ବଳେ-
ଜଣା ପଡ଼େନାହିଁ ଜ୍ଞାନ,
ଜ୍ଞାନକୁ ନିଜର କର୍ମରେ ପ୍ରୟୋଗ-
କଲେ ହେବ ମହୀୟାନ ।(୧୫୦)

ପରଦୋଷ ଯିଏ ଖୋଜି ବୁଲୁଥାଏ-
ତାକୁ ଦିଶେ ଦୋଷମୟ,
ଭଲ ଗୁଣ କିଛି ଦେଖିବାକୁ ପୁଣି-
ନଥାଏ ତାର ସମୟ ।(୧୫୧)

ଅନ୍ୟର ଗୋଟିଏ ଛିଦ୍ରକୁ ନିରେଖି-
କହିଲେ କଟୁ ବଚନ,
ନିଜର ଅସଂଖ୍ୟ ଛିଦ୍ରକୁ ଦେଖାଇ-
ହସିବେ ଜଗତ ଜନ ।(୧୫୨)

ପ୍ରତ୍ୟେକ ଦିବସ ନୂତନ ସକାଳ-
କାର୍ଯ୍ୟ ଆରମ୍ଭର ବେଳ,
ପ୍ରତ୍ୟେକ ମୁହୂର୍ତ୍ତ ଜାଗୃତିର ପାଇଁ-
ହୋଇଥାଏ ଶୁଭକାଳ ।(୧୫୩)

ଯଥା ଶୀଘ୍ର କର ଶୁଭ କାର୍ଯ୍ୟ ଥିଲେ-
ସମୟକୁ ଦେଖନାହିଁ,
କ୍ରୋଧ ବଶେ କିଛି କ୍ଷତି କରିପାର-
ରୁହ କିଛି କ୍ଷଣ ପାଇଁ ।(୧୫୪)

ନୀତିବାନ ପାଶେ ହାର ମାନିଯାଏ-
ବଳବାନ ଧନବାନ,
ଅନ୍ୟାୟ ଅନୀତି ସର୍ବଦା ଦୁର୍ବଳ-
ଟାଣଥାଏ କିଛି ଦିନ ।(୧୫୫)

କୁବୃକ୍ଷ ଗୋଟିଏ ବନ ମଧ୍ୟେ ଥିଲେ-
ବନକୁ କରଇ ଧ୍ୱଂସ,
ବିନ୍ଦୁଏ ଜହର ଅମୃତ ଭାଣ୍ଡକୁ-
କରି ଦେଇଥାଏ ନାଶ । (୧୫୬)

ଉଚ୍ଚ ଚିନ୍ତା ଧାରା ମହତ ଭାବନା-
ରହିଛି ଯାହାର ମନେ-
ଈଶ୍ୱର ସର୍ବଦା ତାଙ୍କରି ପାଖରେ-
ରହିଥାନ୍ତି ବନ୍ଧୁ ପଣେ । ୧୫୭)

ଗୀତ ଶୁଣିବାରେ ଗୀତ ଗାଇବାରେ-
ଜାଣିବ ମଣିଷ ସ୍ତର,
ନୀତିବାନ ଜ୍ଞାନୀ ସଙ୍ଗେ ମିଶୁଥିଲେ-
ଜଣାପଡ଼େ ଗୁଣ ତାର ।(୧୫୮)

କୋଠ ସମ୍ପତ୍ତିର ରକ୍ଷଣା ବେକ୍ଷଣେ-
ନଥାଏ କାହାରି ଧ୍ୟାନ,
ଭାଗ ବଣ୍ଟା ବେଳେ କହନ୍ତି ସକଳେ-
ସେହି ସଂପତ୍ତି ମୋ ପ୍ରାଣ ।(୧୫୯)

ଆପଣା ସୁନାଟି ଭେଣ୍ଡି ହୋଇଗଲେ-
କାହାକୁ କେ ଦେବ ଦୋଷ,
ନିଜ ଦୋଷ ପାଇଁ ଦଣ୍ଡ ପାଏ ପ୍ରାଣୀ-
ସବୁ ସୁଖ କରି ନାଶ ।(୧୬୦)

ଦୀପ ଜଳି ଜଳି ସରିଯାଏ ସିନା-
ପରକୁ ଦିଏ ଆଲୋକ,
ସାଧୁ ସନ୍ଥ ଜ୍ଞାନୀ ଅନ୍ୟର ମନରେ-
ଭରି ଦିଅନ୍ତି ପୁଲକ ।(୧୬୧)

ପ୍ରତ୍ୟେକ ମଣିଷ କାର୍ଯ୍ୟର ପ୍ରଣାଳୀ-
ଚିନ୍ତାଧାରା ଭିନ୍ନ ଭିନ୍ନ,
ସଭିଏ ଚାହାନ୍ତି ମୋ ପରି ସେ ହେଉ-
ଛାଡ଼ି ନିଜ ବୃତ୍ତି ଧର୍ମ ।(୧୬୨)

ଦୃଷ୍ଟିର ପଥରୁ ଦୂରେଇ ରହିଲେ-
ମନ କି ହୃଦୟେ ରହେ?
ପ୍ରିୟ ଜନ କଥା ଶତ୍ରୁ ପକ୍ଷ ବ୍ୟଥା-
ଧୀରେ ଧୀରେ ଚାଲିଯାଏ । (୧୬୩)

ଯିଏ ଯେତେ ବଡ଼ କଡ଼ା ପରୀକ୍ଷାର-
ହୋଇ ଅଛି ସମ୍ମୁଖୀନ,
କଷଟି ପଥର ଘଷି ମାଜି ତାର-
ଜୀବନକୁ କରେ ଟାଣ ।(୧୬୪)

ପରିବାରକୁ ଯେ ପର ବୋଲି ଭାବେ-
ନିଜ କାର୍ଯ୍ୟକୁ କଠିନ,
ସେଭଳି ଲୋକଟି ପର ଘର ପୋଷା-
ସ୍ୱାର୍ଥପର ଲୋଭୀ ଜାଣ ।(୧୬୫)

ଗଞ୍ଜଡ଼ ଚିହ୍ନଇ ଗଞ୍ଜଡ଼କୁ ଶୀଘ୍ର-
ସୁନାକୁ ଚିହ୍ନେ ବଣିଆ,
ଚୋରକୁ ଦେଖିଲେ ପୋଲିସ ଚିହ୍ନଇ-
ଗୁଣକୁ ଚିହ୍ନେ ଗୁଣିଆ ।(୧୬୬)

ଈଶ୍ୱର ଦୁଆର ଦୂର ହୋଇପାରେ-
ଦୃଷ୍ଟି ତାଙ୍କର ପ୍ରଖର,
ଆମେ ଯେଉଁଠାରେ ଯାହା ବି କରୁଛୁ-
ଥାଏ ତାଙ୍କର ନଜର ।(୧୬୭)

ଛୋଟ ମନେକଲେ ଶତ୍ରୁ ଆଉ ରୋଗ-
ବଢ଼ି ବଢ଼ି ଯାଉଥାଏ,
ସାମାନ୍ୟ ନିଆଁକୁ ହେଳା କରିଦେଲେ-
ଗାଆଁ ଯାକ ଜାଳିଦିଏ ।(୧୬୮)

ବଣିଆ ପ୍ରହାର ହଜାରକୁ ବଳି-
କମାର ଏକ ପ୍ରହାର ,
ଲକ୍ଷେ ଛୁଞ୍ଚି ମିଶି ହେବକି ଡାଙ୍ଗଣ-
ଯେମିତି କାମ ଯାହାର ।(୧୬୯)

ଏଣ୍ଡୁଅ ଧାଇଁଲେ ସିଜୁ ବୁଦାଯାଏ-
ଶିଶୁ ଧାଇଁ କହେ ମାଆ,
କୋଇଲି ଧାଇଁଲେ କୁଆ ବସାଯାଏ-
ଅଣ୍ଡାରୁ ଫୁଟିବ ଛୁଆ ।(୧୭୦)

ଜାଣିବା ଲୋକଙ୍କୁ ଠାରିଦେଲେ ସିନା-
ବୁଝନ୍ତି ଅସଲ କଥା,
ନିର୍ବୋଧ ଅବୋଧ ବୁଝିବେ ଓଲଟା-
ଦେଇ ଅପମାନ ବ୍ୟଥା ।(୧୭୧)

ନିଜର ସୁଖକୁ ବାଣ୍ଟିବା ଜାଣିଲେ-
ସେହି ସୁଖ ବଢୁଥାଇ,
ଦୁଃଖକୁ ବାଣ୍ଟିଲେ କମି କମି ଯାଏ-
ବାଣ୍ଟିବାର ମଜା ଏହି ।(୧୭୨)

ମଗା ତରକାରୀ ସୁଆଦିଆ ଟିକ-
ପାଟି ପାଇଁ ସୁଡ଼ୁକାଏ,
ପେଟ ପୂରେ ନାହିଁ ଦିନ ସରେ ନାହିଁ-
ମଗା କଥା ରହିଯାଏ ।(୧୭୩)

କେତେ ଅସମ୍ଭବ ବଡ଼ ବଡ଼ କାର୍ଯ୍ୟ-
ସହଜରେ ହୋଇଯାଏ,
କର୍ମ ବାମ ହେଲେ କୁଟା ଖିଏ ପୁଣି-
ଲୁହାର ଶିକୁଳି ହୁଏ ।(୧୭୪)

ଘୋଡ଼ାକୁ କେବେ ବି ଘୋଡ଼ା ସରି ନୁହେଁ-
ଏକା ସବୁବେଳେ ବୋକା,
ଏକ ସାକ୍ଷୀ କେବେ ପ୍ରମାଣ ହୁଏନା-
ଏକା ଥିଲେ ଲାଗେ ଶଙ୍କା ।(୧୭୫)

ସୂର୍ଯ୍ୟ ଏକା ସିନା ଦୁନିଆ ସମ୍ମୁଖେ-
ଚନ୍ଦ୍ର ଏକା ମଧୁ ଝରା,
ତାଙ୍କୁ ଘେରିଛନ୍ତି କେତେ ଛୋଟ ବଡ଼-
ଜ୍ୟୋତିର୍ମୟ ଗ୍ରହ ତାରା ।(୧୭୬)

ସିଂହ ପଶୁରାଜ ମହା ବଳବାନ-
କାହାକୁ ନଥାଏ ଡର,
ତଥାପି ସିଂହର ସଂଖ୍ୟା କମିଯାଏ-
ଧନ୍ୟ ପ୍ରଭୁଙ୍କ ବିଚାର ।(୧୭୭)

ଲକ୍ଷ ଲକ୍ଷ ଛେଳି ମରାହୁଏ ନିତି-
ସଂଖ୍ୟା ହୁଏନାହିଁ ଊଣା,
ଦୁର୍ବଳକୁ ସାହା ହୁଅନ୍ତି ଈଶ୍ୱର-
ଏକଥା ସଭିଙ୍କୁ ଜଣା।(୧୭୮)

ସାଧନା ପଠନ ନିଷ୍ଠା ଏକାଗ୍ରତା-
ଆଣିଦିଏ ସଫଳତା,
ଆଳସ୍ୟ ବିମୁଖ ନିଦ୍ରା ଭୟ ସୁଖ-
ଡାକିଆଣେ ବିଫଳତା ।(୧୭୯)

କୋଇଲିର ରୂପ କଳା ବୋଲି ପ୍ରଭୁ-
ଦେଇଛନ୍ତି କୁହୁ ତାନ,
ଛୋଟ ଗୁଳ୍ମଟିଏ ତୁଳସୀ ହେଲେବି-
ଭରି ଦେଇଛନ୍ତି ଗୁଣ ।(୧୮୦)

ବଳବାନ ହାତୀ ବଣରେ ଥିଲେବି-
ମନେ ଭରିଥାଏ ଭୟ,
ଛୋଟ ଆଖି ତାର ଦେଖାଇ ଦିଏନା-
ନିଜ ରୂପ ମହାକାୟ ।(୧୮୧)

ଶିଶୁକୁ ପାଳିବ ହସାଇ ଖେଳାଇ-
ସ୍ନେହ ଦେଇ ପାଞ୍ଚ ବର୍ଷ ,
ଜ୍ଞାନ ଆହରଣ କରିବ ଶିଶୁଟି-
ସାମାଜିକ ପରିବେଶ ।(୧୮୨)

ଦଶ ବର୍ଷ ପାଇଁ ଶିଶୁକୁ ଗଢ଼ିବ-
କଠୋର କରିବ ମନ,
ସେହି ସମୟରେ ପାଠ୍ୟ ପୁସ୍ତକରୁ-
କରିବେ ସେ ଅଧ୍ୟୟନ ।(୧୮୩)

ଷୋହଳ ହୋଇଲେ ଜାଣିବ ପିଲାଟି-
ହୋଇ ଗଲାଣି ଯୁବକ,
ବୁଝି ବିଚାରି ସେ କାମ କରି ଶିଖୁ-
ଲଗାଇ ନିଜ ବିବେକ ।(୧୮୪)

ଦୁଇଟି ଦରବ ଢ଼ାଙ୍କି ରଖିବାକୁ-
ଶାସ୍ତ୍ର ଉପଦେଶ ଦିଏ,
ଗୋଟିଏ ସୁଖାଦ୍ୟ ଅନ୍ୟଟିଏ ନାରୀ
ଯଉବନେ ଭରା ଯିଏ ।(୧୮୫)

ଫୁଲ ତୋଳି ଗଲେ କଣ୍ଟା ଫୁଟି ଯାଏ-
ଅନ୍ନ ପାଇଁ ପରିଶ୍ରମ,
ପରିଶ୍ରମ କିମ୍ବା କଷ୍ଟକୁ ଡରିଲେ-
ଘରେ ବସି ଜପ ରାମ ।(୧୮୬)

ଭାରତର ଆତ୍ମା ରାମ ନାମ ପୁଣି-
ପବିତ୍ର ଜଳ ଗଙ୍ଗାର,
ମହା ଭାରତର କାହାଣୀକୁ କେବେ-
କରିବନି ହତାଦର ।(୧୮୭)

ଅମୃତ ସନ୍ଧାନ ଯୁଗ ଯୁଗ ଧରି-
ଲାଗିଛି ଏହି ସଂସାରେ,
ସମୁଦ୍ର ମନ୍ଥନ ହୋଇଥିଲା ପୁଣି-
ସେହି ଅମୃତ ଆଶାରେ ।(୧୮୮)

ବିଜ୍ଞାନୀ ଜାଣିଲେ ଅମୃତ ନାମରେ-
ନାହିଁ ତ କିଛି ଦରବ,
ଆକାଶ ପାତାଳ ଖୋଜିଲେ କି ହେବ?-
ତୁଚ୍ଛାରେ ଦିନ ସରିବ ।(୧୮୯)

ଅସଲ ଅମୃତ  ଭିନ୍ନ ରୂପ ଧରି-
ରହିଛି ଏହି ସଂସାରେ,
ଫୁଲ ଫଳ ଜଳେ ମାଆ ମମତାରେ-
ପୁଣି ମଧୁର ଭାଷାରେ ।(୧୯୦)

ସୂର୍ଯ୍ୟ କିରଣରେ ଚନ୍ଦ୍ର ଜ୍ୟୋଛନାରେ-
ଅଛି ଅମୃତ ଅନ୍ନରେ,
ମାଟି ପଥରରେ ଡାଳ ପତରରେ-
ଚେର ମୂଳିର ଚୂର୍ଣ୍ଣରେ ।(୧୯୧)

ଅମୃତ ରହିଛି ଶ୍ରଦ୍ଧା ଭକତିରେ-
ତ୍ୟାଗରେ ପୁଣି ପ୍ରେମରେ,
ଅମୃତ ରହିଛି ସେବାରେ ଦେବାରେ-
ପୁଣି ଈଶ୍ୱର ନାମରେ ।(୧୯୨)

ଦେଖି ହୁଏନାହିଁ ଦେଖାଇ ହୁଏନି-
ଈଶ୍ୱରଙ୍କ ରୂପ ଯଥା,
ଅମୃତ କେବଳ ଅନୁଭବ ହୁଏ-
ଶରୀର ମନକୁ ମିଠା ।(୧୯୩)

ମିଳିତ ଭାବରେ ରହିଲେ ସଭିଏ-
ଶତ୍ରୁ କରିଥାଏ ଭୟ,
ମିଳିତ ଭାବରେ ଲଢ଼େଇ କରିଲେ-
ନିଶ୍ଚୟ ଲଭିବ ଜୟ ।(୧୯୪)

ମିଳିତ ଭାବରେ କାର୍ଯ୍ୟ ଆରମ୍ଭିଲେ-
ସହଜରେ ଶେଷ ହୁଏ,
ମିଳିତ ଭାବରେ କହିଲେ କଥାର-
ଓଜନଟା ବଢ଼ିଯାଏ ।(୧୯୫)

ମିଳିତ ଭାବରେ ଦେଶ ସେବା କଲେ-
ଦେଶ ହୋଇବ ମହାନ,
ମିଳିତ ଭାବରେ ଲାଗି ରହିଥିଲେ-
ଅଭାବ ହୁଏ ପୂରଣ ।(୧୯୬)

ଗଛ ଲତା ପୁଣି ପଶୁ ପକ୍ଷୀ ମାଟି-
ସୃଷ୍ଟିର ସବୁ ନିର୍ଜୀବେ,
ସାକାର ଭାବନା ନେଇ ପଚାରିଲେ-
ଅନେକ କଥା କହିବେ ।(୧୯୭)

ଘର ଛାତ କହେ ଟେକି ଗୃହ ମଥା-
ଅନ୍ୟକୁ ଆଶ୍ରୟ ଦେଇ,
ଉଚ୍ଚ ଅଭିଳାଷ ଉଚ୍ଚ ଭାବନାରେ-
ଉଚ୍ଚରେ ରହିବ ଯାଇ ।(୧୯୮)

ପଙ୍ଖା ଘୂରି ଘୂରି କହୁଥିବ ପୁଣି-
ମୁଁ ହେଉଛି ଚଳମାନ,
ଶୀତଳ କରିବି ପରିବେଶକୁ ମୁଁ-
ବିତରି ଥଣ୍ଡା ପବନ ।(୧୯୯)

ଝରକା କହିବ ମନ ଖୋଲା ରଖି-
ବାହାର ଦୁନିଆ ଦେଖ,
ଦେଖିଲେ ଜାଣିବ ଜ୍ଞାନ ଆହରିବ-
ଅନ୍ୟଠାରୁ ଭଲ ଶିଖ ।(୨୦୦)

ଆଇନା କହିବ ନିଜ ମୁହଁ ଦେଖ-
ନିଜକୁ ପଚାରି ବୁଝ,
ପର ଅନ୍ନ ଖାଇ ଅନ୍ୟର ଉପରେ-
ହୋଇ ଯାଇଛ କି ବୋଝ ?(୨୦୧)

ଦୁଆର କବାଟ ଚଉକାଠ ବନ୍ଧ-
କହିବ ଜଗିଛି ମୁହିଁ,
ମୋ ପରି ଜଗିବ ନିଜ ସ୍ୱାଭିମାନ-
ଛାଡ଼ିଲେ ପାଇବ ନାହିଁ ।(୨୦୨)

ବତୀ ଜଳୁ ଜଳୁ କହିବ ନିଶ୍ଚୟ-
ଜଳି ଯାଉ ମୋ ସଳିତା,
ମୋ ପରି ଯେ ଜଳେ ଆଲୋକ ଦେଖାଇ-
ହୁଏ ସେ ଜଗତ ଜିତା ।(୨୦୩)

ବିଛଣା କହିବ ମୋ କଥାକୁ ଶୁଣ-
ନେବ ନିଶ୍ଚୟ ବିଶ୍ରାମ,
ସାଧନା କରିବ ମଉନେ ଚିନ୍ତିବ-
ଘରଟି ଏକ ଆଶ୍ରମ ।(୨୦୪)

ସିନ୍ଦୁକ କହିବ ଇନ୍ଦ୍ରିୟମାନଙ୍କୁ-
ତାଲା ପକେଇକି ରଖ,
ବିବେକ ଚାବିରେ ଖୋଲୁଥିବ ନିତି-
ମନକୁ ବୁଝେଇ ରଖ ।(୨୦୫)

ଜାଣେ ଯେଉଁ ଲୋକ ମୃତ୍ୟୁ ଧ୍ରୁବ ସତ୍ୟ-
ସଂସାର ସୁଖ ଅଳୀକ,
ଅନ୍ୟଠାରୁ ଯିଏ ପ୍ରତ୍ୟାଶା ରଖେନା-
ଆନନ୍ଦର ସେ ମାଲିକ ।(୨୦୬)

ସୂର୍ଯ୍ୟଦେବଙ୍କର ଦିନ ବିତିଯାଏ-
ତାପ କିରଣ ବିତରି,
ଭକ୍ତ ଜନଙ୍କର ଦିନ ବିତିଯାଏ-
ପ୍ରଭୁ ନାମକୁ ସୁମରି ।(୨୦୭)

ଶିକାରି ବାପୁଡ଼ା ଦିନ ବିତିଯାଏ-
ଶିକାର ପଛରେ ଧାଇଁ,
ଭିକାରିମାନଙ୍କ ଦିନ ବିତିଯାଏ-
ହାତ ପତେଇ ପତେଇ ।(୨୦୮)

ଚୋର ନିଶାଚର ଦିନ ବିତିଯାଏ-
ଦିନ ଯାକ ଶୋଇ ଶୋଇ,
ଚାତକ ପକ୍ଷୀର ଦିନ ବିତିଯାଏ-
ଆକାଶ ମେଘକୁ ଚାହିଁ ।(୨୦୯)

କୃପଣ ଜନର ଦିନ ବିତିଯାଏ-
ପଇସାକୁ ଗଣି ଗଣି,
ନିଶାଖୋରଙ୍କର ଦିନ ବିତିଯାଏ-
ମଦ ପିଇ, ଧୂଆଁ ଟାଣି ।(୨୧୦)

ପାଠୁଆ ପିଲାର ଦିନ ବିତିଯାଏ-
ପଢ଼ା ବହି ଧରି ଧରି,
ବିଜ୍ଞାନୀ ମଣିଷ ଦିନ ବିତିଯାଏ-
ଆବିଷ୍କାର ଚିନ୍ତା କରି ।(୨୧୧)

ନିନ୍ଦୁକ ଲୋକର ଦିନ ବିତିଯାଏ-
କରି ପର ନିନ୍ଦାଗାନ,
କବି ଲେଖକର ଦିନ ବିତିଯାଏ-
ଧରି କାଗଜ କଲମ ।(୨୧୨)

ଠକ ଅଳସୁଆ ଦିନ ବିତିଯାଏ-
ଆଖି ଲୁହ ପୋଛି ପୋଛି,
ଚାଷୀ ମୂଲିଆର ଦିନ ବିତିଯାଏ-
ନାହିଁ ଖରା ବର୍ଷା କିଛି ।(୨୧୩)

କହି ଜାଣିଥିଲେ କଥାଟି ସୁନ୍ଦର-
ବାନ୍ଧିଲେ ସୁନ୍ଦର ମଥା,
ନାଚି ନଜାଣି ଯେ ମଞ୍ଚ ତେଢ଼ା କହେ-
ତଳକୁ ରହେ ତା ମଥା ।(୨୧୪)

ବିଦ୍ୟା ଅଧ୍ୟୟନ ଶୁଆ ଶିକ୍ଷା ନୁହେଁ-
କର୍ମରେ କର ପ୍ରୟୋଗ,
ଯିଏ ବୁଝିପାରେ ଶିକ୍ଷାର ଉଦ୍ଦେଶ୍ୟ-
ଦିଶେ ତାକୁ ନୂଆ ଦିଗ ।(୨୧୫)

ମହା ଭାରତରେ ଭରିଛି କାହାଣୀ-
ସେ ସବୁ ଚିର ନୂତନ,
ତାକୁ ଅନୁସରି କର୍ମ କରୁଥିଲେ-
ଆନନ୍ଦେ କଟେ ଜୀବନ ।(୨୧୬)

ରାମାୟଣ କଥା ଆଦର୍ଶ ଚରିତ-
ଆଲୋକ ଜୀବନ ପଥେ,
ତ୍ୟାଗ ନିଷ୍ଠା ପ୍ରେମ ସତ୍ୟ ଭକ୍ତିରସ-
ଭରିଦିଏ ପ୍ରାଣୀ ଚିତ୍ତେ ।(୨୧୭)

ଗୀତା ଭାଗବତ ସତେକି ଅମୃତ-
ସବୁଦିନ ନୂଆ ଲାଗେ,
ଯେତେଥର ତାକୁ କରିବ ସମୀକ୍ଷା-
ନେଉଥିବ ନୂଆ ଦିଗେ ।(୨୧୮)

କିଛି କିଛି କଥା ଅବିଶ୍ୱାସ ଲାଗେ-
ତାକୁ  କରିବ ଉପେକ୍ଷା,
ଯେଉଁ କାହାଣୀଟି ଲାଗିବ ବଢ଼ିଆ-
କର ପ୍ରୟୋଗ ପରୀକ୍ଷା ।(୨୧୯)

ଈଶ୍ୱର  କେଉଁଠି  ଖୋଜୁଥିବ ଯଦି-
କଦାପି ମିଳିବେ ନାହିଁ,
ଈଶ୍ୱର ସବୁଠି ବିରାଜିତ ଭାବ-
ସମ୍ମୁଖେ ଭେଟିବେ ସାଇଁ  ।(୨୨୦)

ଆଧ୍ୟାତ୍ମିକ ପଥ ଅତ୍ୟନ୍ତ ବନ୍ଧୁର-
କଣ୍ଟକିତ ଦୁଃଖମୟ,
ଧୈର୍ଯ୍ୟ ଏକା ତାକୁ କୁସୁମିତ କରେ-
ରହିଲେ ଅଧ୍ୟବସାୟ ।(୨୨୧)

ଆଶା ରଖିଦେଲେ ମହତ ହୁଏନା-
ଲୋଡ଼ା ଦିବ୍ୟ କାର୍ଯ୍ୟ ଧାରା,
ସେହି ଅନୁରୂପ ମହତ ଚିନ୍ତନ-
ସାଧନା, ସଂଯମ ଲୋଡ଼ା ।(୨୨୨)

ଅନାଗତ ପ୍ରତି ଥାଏ ଯେ ସତର୍କ-
ବୁଦ୍ଧି ଯାହାର ପ୍ରଖର,
ସେହି ଲୋକ ସଦା ଲଭିଥାନ୍ତି ସୁଖ-
ବିପଦ ନାହିଁ ତାଙ୍କର ।(୨୨୩)

ଭାଗ୍ୟକୁ ଆଦରି କର୍ମ ନିନ୍ଦା କରି-
ପଡ଼ି ରହିଥାଏ ଯିଏ,
ଉଦ୍‌ଯୋଗ ନଥିଲେ ଶ୍ରମହୀନ ହେଲେ-
ତାର ସର୍ବ ନାଶ ହୁଏ ।(୨୨୪)

ବନ୍ଧୁ ପରିଜନ କର୍ମ ଓ ବଚନେ-
ହୋଇବ ଯଦି ବିଶ୍ୱସ୍ତ,
ସଫଳତା ସୁଖ ଆନନ୍ଦର ସୀମା-
ହୋଇଯିବ ପରିବ୍ୟାପ୍ତ ।(୨୨୫)

ସାଫଲ୍ୟ ନୁହଁଇ ଯୋଗ୍ୟ ମାନଦଣ୍ଡ-
ମାନବର ସାମର୍ଥ୍ୟତା,
କିଛି ଭାଗ୍ୟଫଳ କିଛି ସୁଯୋଗରୁ-
ମିଳିଥାଏ ସଫଳତା ।(୨୨୬)

ସଫଳତା ପାଇଁ ଲୋଡ଼ା ହୋଇଥାଏ-
ସାହସ ଓ ପରାକ୍ରମ,
ସବୁଥାଇ ପୁଣି ବିଫଳତା ମିଳେ-
ହୋଇଥିଲେ ବୁଦ୍ଧିହୀନ ।(୨୨୭)

ବିଛା କି ବଲୁରି ଦଂଶନ କରିଲେ-
ଭାଙ୍ଗି ଯାଏ ତାର ଶୁଣ୍ଢ,
ଲାଉଡ଼ ଲଗାଇ ବିଷ ଛାଡ଼ିବାରୁ-
ପାଏ ନିଜେ ମୃତ୍ୟୁଦଣ୍ଡ ।(୨୨୮)

ଦୁଷ୍ଟବୁଦ୍ଧି  ନେଇ ଦିଏ ଯେ ଯନ୍ତ୍ରଣା-
ପାଏ ସେ ତାର କୁଫଳ,
ନିଜ କର୍ମ ଫଳ ଡାକିଆଣେ ପୁଣି-
ଦୁଷ୍ଟ ପାଇଁ ମୃତ୍ୟୁକାଳ ।(୨୨୯)

କିଭଳି ବ୍ୟସ୍ତତା ଜାଣିବାର ନାହିଁ-
କାହିଁକି ବ୍ୟସ୍ତତା ଜାଣ,
ବ୍ୟସ୍ତତା କାରଣ ହୁଏ ମୂଲ୍ୟବାନ-
ଯଥା ମହୁମାଛି ଗୁଣ ।(୨୩୦)

ଭୁଲିଯିବ ନାହିଁ ମାଆର ମମତା-
ଭୁଲିବନି ମାତୃଭାଷା,
ମାତୃଭୂମି ପୁଣି ମାତୃସଂସ୍ଥା ଯିଏ-
ଭରିଛି ଜୀବନେ ଆଶା ।(୨୩୧)

ଅଧର୍ମ ପଥରେ ଅନୀତି କର୍ମରେ-
କଷ୍ଟ ଦେଇ ଅନ୍ୟ ପ୍ରାଣେ,
ଯେଉଁ ଧନ ଆସେ ବଢ଼ି ବଢ଼ି ଯାଏ-
ପାପ ପଙ୍କ ଦିଗେ ଟାଣେ ।(୨୩୨)

ସକଳ କାର୍ଯ୍ୟରେ ବାଧା ସୃଷ୍ଟି କରେ-
ନ୍ୟାୟ୍ ଧର୍ମେ ନିରୁତ୍ତର,
ସତ୍ୟକୁ ଚପାଇ ଯୁଦ୍ଧରୁ ପଳାଏ-
ଜାଣିବ ସେ ସ୍ୱାର୍ଥପର ।(୨୩୩)

ମନୁଙ୍କ ଭାଷାରେ ଇନ୍ଦ୍ର ଚନ୍ଦ୍ର ବାୟୁ-
ଯମ ବରୁଣ କୁବେର,
ସୂର୍ଯ୍ୟ ଅଗ୍ନି ଗୁଣ କିଛି ଥିଲେ ମିଳେ-
ଶାସନର ଅଧିକାର ।(୨୩୪)

ସୁଖ ପାଇଁ ପାପ କର୍ମ କରେ ପ୍ରାଣୀ-
ଭୁଞ୍ଜିଥାଏ କର୍ମ ଫଳ,
ନିଜେ ଘାଣ୍ଟିହୁଏ ପାପ ପଙ୍କ ମଧ୍ୟେ-
ସଂସାର ହୁଏ ଜଞ୍ଜାଳ ।(୨୩୫)

ସବଳର ପାଇଁ ସବୁ ସୁଖ ଯହିଁ-
ରହିଥାଏ ଖଞ୍ଜା ହୋଇ ,
ଦୁର୍ବଳ ଯେଉଁଠି ଲଭଇ ଲାଞ୍ଛନା-
ସେଠି ଗଣତନ୍ତ୍ର ନାହିଁ ।(୨୩୬)

ପ୍ରକୃତ ସାଧକ ସିଦ୍ଧି ଲାଭ କରେ-
ମନ ନିର୍ଲିପ୍ତ ନିର୍ମଳ,
ପଦ୍ମ ପତ୍ର ଯଥା ଜଳ ମଧ୍ୟେ ଥାଇ-
ଜଳ କରେ ଡଳ ଡଳ ।(୨୩୭)

ଦୟା ଶବଦଟି ଅତ୍ୟନ୍ତ ସରଳ-
ଶୁଣିବାକୁ ସିନା ଛୋଟ,
ତାର ପ୍ରତିଧ୍ୱନି ଗୁଞ୍ଜରିତ ହେଲେ-
ଫିଟାଏ ସୁଖର ବାଟ ।(୨୩୮)

ଶରୀରଟି ସିନା ମିଳିଅଛି ମୋତେ-
ଜୀବନୀ ଶକ୍ତି ତାଙ୍କର,
ଚକ୍ଷୁ କର୍ଣ୍ଣ ଜିହ୍ୱା ଚର୍ମରେ ଭରିଛି-
ପ୍ରଭୁ କରୁଣା ଅପାର ।(୨୩୯)

ମୁହିଁ କରିପାରେ ପରର ଅହିତ-
ଲଗାଇ ମୋର ଶରୀର,
ଲାଗିଥାନ୍ତି ସଦା ପ୍ରାଣୀର ହିତରେ-
ମଙ୍ଗଳମୟ ଈଶ୍ୱର ।(୨୪୦)

ପାଟିକୁ ସୁଆଦ ଖାଦ୍ୟରେ ନଥାଏ-
ଭୋକରେ ଥାଏ ସୁଆଦ,
ଈଶ୍ୱରଙ୍କୁ ଭୋଗ ଦିଏ ନାହିଁ ସୁଖ-
ବିଶ୍ୱାସ ଦିଏ ଆନନ୍ଦ ।(୨୪୧)

ସହାନୁଭୂତିକୁ ଭୟ କରିଥାନ୍ତି-
ଆତ୍ମ ସ୍ୱାଭିମାନୀ ବୀର,
ଦୁଃଖ କି ଯନ୍ତ୍ରଣା ଯେତେ ବଡ଼ ହେଉ-
ବହେନି ଆଖିରୁ ନୀର ।(୨୪୨)

ପ୍ରତିବଦ୍ଧତାରୁ ସାହସର ଜନ୍ମ-
ଯଦି ଥାଆନ୍ତି ବିଶ୍ୱସ୍ତ,
ଆତ୍ମୋତ୍ସର୍ଗ ପାଇଁ ମନୋବୃତ୍ତି ବଢ଼େ-
ବିବେକ ହୁଏ ଆଶ୍ୱସ୍ତ ।(୨୪୩)

ଅଭାବୀ ଲୋକକୁ ଦାନ କରାଯାଏ-
ଦୁର୍ଦ୍ଦଶାଗ୍ରସ୍ତକୁ ସାହା,
ଦାନ-ସାହା ପାଇଁ ରଖନି ପ୍ରତ୍ୟାଶା-
ଖୋଜିବନି ବାହ୍ୱା ବାହ୍ୱା ।(୨୪୪)

ମଣିଷ କଦାପି ଦେଇ ପାରେନାହିଁ-
ମାଆ ମମତାର ମୂଲ,
କୃଷକ ସୈନିକ ଲେଖକର ପାଇଁ-
ଦେବାକୁ ନାହିଁ ସମ୍ବଳ ।(୨୪୫)

ମାଆକୁ ମର୍ଯ୍ୟାଦା ମିଳଇ ଯେଉଁଠି-
କୃଷକକୁ ମିଳେ ନ୍ୟାୟ,
ସୈନିକର ବାହାଦୂରୀକୁ ସମ୍ମାନ-
ସେ ସ୍ଥାନେ ସର୍ବଦା ଜୟ ।(୨୪୬)

ଲେଖକ ପଣ୍ଡିତ ଗୁଣୀ ଜ୍ଞାନୀ ଜନେ-
ଯେଉଁଠି ଥିବ ସମ୍ମାନ,
ସେହି ଦେଶ, ରାଜ୍ୟ ଉଚ୍ଚାସନ ପାଏ-
ବଢ଼େ ସମାଜର ମାନ ।(୨୪୭)

ଏଭଳି ପଦାର୍ଥ ଜଗତରେ ନାହିଁ-
ଯାହା କାର୍ଯ୍ୟେ ନଲାଗଇ ,
ଏଭଳି ବୃକ୍ଷଟି ନାହିଁ ତ ଯାହାର-
ଔଷଧୀୟ ଗୁଣ ନାହିଁ ।(୨୪୮)

ଏଭଳି ମଣିଷ ଜନମିନି କାହିଁ-
ସବୁ କାମକୁ ଅଯୋଗ୍ୟ,
ଏଭଳି ସମୟ ଆସିବନି କେବେ-
ଖାଲି ଦୁଃଖ ହେବ ଭୋଗ ।(୨୪୯)

ଏଭଳି ଘଟଣା ଘଟିବନି ଯାହା-
ଆଗରୁ ଘଟିନି କେବେ,
ଇତିହାସ ବାର ବାର ଦୋହରାଏ-
କିଏ ପଛେ କିଏ ଆଗେ ।(୨୫୦)

ମୁଖସ୍ଥ ପାଠଟି  ପରୀକ୍ଷା ସରିଲେ-
ସବୁ ଭୁଲି ହୋଇଯାଏ,
ବୁଝିଥିବା ପାଠ ସମଗ୍ର ଜୀବନ-
ଛାଇ ଭଳି ସାଥେ ଥାଏ ।(୨୫୧)

ଧନ ଅରଜିଲେ ଦାନ କରେ ଦାନୀ-
ଜ୍ଞାନକୁ ବିତରେ ଜ୍ଞାନୀ,
ଦେହବଳ ଲାଗେ ପର ଉପକାରେ-
ଉପଯୁକ୍ତ ପାତ୍ର ଜାଣି ।(୨୫୨)

ପ୍ରାଣୀ ମନ ଜାଣି ଈଶ୍ୱର ସର୍ବଦା-
କରନ୍ତି ବିପଦୁ ରକ୍ଷା,
ସଭିଙ୍କ କାମନା ପୂରଣ କରନ୍ତି-
ଯିଏ ଯାହା କରେ ଭିକ୍ଷା । (୨୫୩)

ଥରେ ଜଣେ ଭକ୍ତ ହରିନାମ ଧରି-
ଘରେ ବସି ରହିଥିଲା,
କେହି ଜଣେ ଆସି କହିଲା ମଉସା-
ବାତ୍ୟା ବନ୍ୟା ଆସିଗଲା । (୨୫୪)

ଗାଆଁଯାକ ଲୋକ ଜୀବନ ବିକଳେ-
ଗଲେଣି ଘରକୁ ଛାଡ଼ି,
ଉଚ୍ଚ ଜାଗା ଦେଖି ଆଶ୍ରା ନେଇଯାଅ-
ନହେଲେ ମରିବ ବୁଡ଼ି । (୨୫୫)

ଶୁଣି ତାର କଥା କହିଲା ଭକତ-
ଭଗବାନ ମୋର ପ୍ରିୟ,
ରକ୍ଷା କରିବାଟା ତାଙ୍କର କର୍ତ୍ତବ୍ୟ-
ମୁଁ କିଆଁ ହେବି ଅଥୟ ? । (୨୫୬)

କିଛି କାଳ ପରେ ଆସିଗଲା ବନ୍ୟା-
ପଶିଲା ଭକତ ଘରେ,
ଜୀବନ ବିକଳେ ଉଠି ସେ ଚାଳକୁ-
ଡାକିଲେ ରଖ ଠାକୁରେ । (୨୫୭)

ବେଳକାଳ ଦେଖି ଡଙ୍ଗାରେ ଆସିଲେ-
ବନ୍ୟାର ଉଦ୍ଧାରକାରୀ,
ଦୃଢ ମନ ନେଇ ଭକତ କହିଲା-
ଯିବି ନାହିଁ ଡରିମରି । (୨୫୮)

ପ୍ରଭୁନାମ ଧରି ବସିଛି ମୁଁ ଏବେ-
ରକ୍ଷା କରିଦେବେ ସିଏ,
ମଲେ ମୁଁ ମରିବି ପ୍ରଭୁଙ୍କ ଇଚ୍ଛାରେ-
ତୁମକୁ ପଚାରେ କିଏ ? । (୨୫୯)

ଫେରି ଚାଲିଗଲେ ତ୍ରାଣକର୍ମୀ ଦଳ-
ଆସିଲା ସ୍ରୋତ ପ୍ରବଳ,
ଭକତକୁ ନେଇ ନଚେଇ ନଚେଇ-
ନଦୀରେ ବୁଡ଼ିଲା ଚାଳ । (୨୬୦)

ଧର୍ମ ବଳେ ଭକ୍ତ ମୃତ୍ୟୁଲୋକ ଯାଇ-
କହିଲା ପ୍ରଭୁଙ୍କୁ ଚାହିଁ,
ତୁମକୁ ଭରସି ଜୀବନ ଗଲା ମୋ-
ତୁମେ ଦୋଷୀ ଏଥିପାଇଁ । (୨୬୧)

ଭକତକୁ ଚାହିଁ କହିଲେ ଶ୍ରୀହରି-
ବୁଝିଲି ମନକୁ ତୋର,
ତୋତେ ବଞ୍ଚାଇବା ଉଦ୍ଧାର କରିବା-
କର୍ତ୍ତବ୍ୟ ନିଶ୍ଚୟ ମୋର । (୨୬୨)

ପ୍ରଥମ ଲୋକଟି ପଠାଇ କହିଲି-
ତା କଥା ଶୁଣିଲୁ ନାହିଁ,
ଭାବୁଛୁ କି ଶଙ୍ଖ ଚକ୍ର ଗଦା ଧରି-
ଯାଇ ଥାଆନ୍ତି କି ମୁହିଁ ? । (୨୬୩)

ଡଙ୍ଗା ପଠାଇଲି ଆସିଲୁ ନାହିଁ ତୁ-
ମନେ ଭରି ଅହଂକାର,
ଜାଣିଲି ତୁ ମୂର୍ଖ ଚିହ୍ନି ପାରୁନାହୁଁ -
ମରଣ ତୋ ଦରକାର । (୨୬୪)

ପ୍ରାଣୀ ଜଗତକୁ ବଞ୍ଚାଇବା ପାଇଁ-
ଦେଇଛି ମୁଁ ବୁଦ୍ଧି-ବଳ,
ବୁଦ୍ଧି-ବଳ ଛାଡ଼ି ମୋ ନାମ ଜପିଲେ-
ପୂରିବ ପ୍ରାଣୀର କାଳ । (୨୬୫)

ବିବେକୀ ପୁରୁଷ ସୂକ୍ଷ୍ମ ଶରୀରକୁ-
କରିଥାଏ ସୁସଂସ୍କାର,
ସ୍ଥୂଳ ମାଧ୍ୟମରେ ମୋକ୍ଷ ଲଭିଥାଏ-
ପ୍ରାଣୀର ସୂକ୍ଷ୍ମ ଶରୀର ।(୨୬୬)

ପାପ ତାପ ପୁଣି ପତନ କାରଣ-
ବିଷୟ୍ ଆସକ୍ତି ମୂଳ,
ବିଷୟ୍ ଚିନ୍ତନ କରିଲେ ଭୋଗର-
ଆସକ୍ତି ହୁଏ ପ୍ରବଳ ।(୨୬୭)

ପଙ୍କ ଗାଡ଼ିଆରେ ହାତୀ ପଡ଼ିଗଲେ-
ହାତୀ ହିଁ ରଖଇ ପ୍ରାଣ,
ବିପଦ ଖାଲରୁ ଉଠାଏ କେବଳ-
ସମକକ୍ଷ ଯେଉଁ ଜନ ।(୨୬୮)

ସାନ ଅବା ବଡ଼ ବିଚାର ନକରି-
ନିଷ୍ଠାରେ କରିଲେ କାମ,
ଅଭ୍ୟାସର ବଳେ ସଫଳତା ଆସେ-
ଅସାଧ୍ୟ ହୁଏ ସାଧନ ।(୨୬୯)

ଗରିବକୁ କିଛି ଲୋଡ଼ା ହୋଇଥାଏ-
ପ୍ରାଣ ବଞ୍ଚାଇବା ପାଇଁ,
ଧନୀ ଲୋଡ଼େ ବେଶି ବିଳାସର ପାଇଁ-
ଲୋଭୀକୁ ତ ଅଣ୍ଟେ ନାହିଁ ।(୨୭୦)

ନାହିଁ ତାର ସତ୍ତା ପ୍ରକୃତ ସ୍ୱରୂପ-
ଭ୍ରମରେ ବଡାଏ ଆଶା,
ତାକୁ ମାୟା ବୋଲି ଜାଣିବ ସୁଜନେ-
ଇନ୍ଦ୍ରିୟରେ ତାର ବସା ।(୨୬୧)

ଈଶ୍ୱରଙ୍କ ଦାନ ମୋହ ସୃଷ୍ଟିକାରୀ-
ଶକତିରେ ଭରା ମାୟା,
ପ୍ରତ୍ୟେକ ପ୍ରାଣୀକୁ ଛନ୍ଦି ରଖେ ସେହି-
କାୟା ସଙ୍ଗେ ସତେ ଛାୟା ।(୨୬୨)

ପ୍ରହେଳିକା ସୃଷ୍ଟି କରିପାରେ ସେହି-
ସର୍ବଶ୍ରେଷ୍ଠ କଳାକାର,
ଇନ୍ଦ୍ରଜାଲେ ତାର ଅସୀମ ଶକତି-
ଶ୍ରେଷ୍ଠତମ ଯାଦୁକର ।(୨୬୩)

ଇନ୍ଦ୍ରିୟ ସେବକ ମାୟା ଜାଲେ ପଡ଼ି-
ହୋଇଥାଏ ସମ୍ମୋହିତ,
ପ୍ରକୃତ ବସ୍ତୁକୁ ଅପ୍ରକୃତ କହେ-
ଅନିତ୍ୟକୁ ଭାବେ ନିତ୍ୟ ।(୨୬୪)

ଅନାସକ୍ତି ଏକା ମାୟା ବନ୍ଧନକୁ-
କରିପାରିଥାଏ ଛିନ୍ନ,
ବିବେକ ହୋଇଲେ ମନର ମାଲିକ-
ମାୟା ମୋହ ହୁଏ ଚୂର୍ଣ୍ଣ ।(୨୬୫)

ଜ୍ଞାନୀ ମାନୀ ଧନୀ ସବୁ ଜାଣି ଜାଣି-
ମାୟା ଜାଲରେ ପଡ଼ନ୍ତି,
ମିଥ୍ୟା ଚାକଚକ୍ୟ ନଶ୍ୱର ଚିଜକୁ-
ସୁଖ ଆନନ୍ଦ ମଣନ୍ତି ।(୨୭୬)

ପାଦେ ପାଦେ ମାୟା ବତାଇ ତା କାୟା-
ଆଗକୁ ନିଅଇ ଟାଣି,
ମୃତ୍ୟୁଲୋକେ ଥାଇ ଭାବେ ମୁଁ ଅମର-
କାଲି ମୃତ୍ୟୁ ହେବ ଜାଣି ।(୨୭୭)

ମନ ବିକାଶରେ ଇଚ୍ଛା ହୁଏ ସୃଷ୍ଟି-
ଇଚ୍ଛାରୁ ଜନମେ କାର୍ଯ୍ୟ,
କାର୍ଯ୍ୟ ହିଁ ଦେଖାଏ ମଣିଷ ପଣିଆଁ-
ଜଣାପଡ଼େ ବଳ ବୀର୍ଯ୍ୟ ।(୨୭୮)

ମନଥାଏ ଭିନ୍ନ କଥା କହେ ଭିନ୍ନ-
କାର୍ଯ୍ୟ କରୁଥାଏ ଭିନ୍ନ,
ଏଭଳି ମଣିଷ ଦୁରାତ୍ମାରେ ଗଣା-
ନଥାଏ ତା ସ୍ୱାଭିମାନ ।(୨୭୯)

ମନ ବଚନରେ ଭାବନା କର୍ମରେ-
ତାଳ ମେଳ ଯାର ଥାଏ,
ଜୀବ ଯାଉ ପଛେ ବଚନ ରଖଇ-
ମହାତ୍ମାରେ ଗଣା ହୁଏ ।(୨୮୦)

ଲୋଭୀ ପ୍ରାଣୀ କେବେ ସନ୍ତୋଷ ହେବନି-
ଲୋଭନୀୟ ବସ୍ତୁ ପାଇ,
ନିଆଁରେ ଢାଳିଲେ ହାଣ୍ଡି ହାଣ୍ଡି ଘିଅ-
ନିଆଁ କେବେ ଲିଭେ ନାହିଁ ।(୨୮୧)

ପାଣି କାଟିପାରେ ପଥରକୁ ସିନା-
କାଚକୁ କାଟଇ ହୀରା,
ହାତୀକୁ ଡରାଏ ପିମ୍ପୁଡ଼ିର ମେଳି-
ଲାଗେ ବିପରିତ ପରା ।(୨୮୨)

ଗରିବର ଦୁଃଖ ବୁଝଇ ଗରିବ-
ସବୁଠି ନୁହଁଇ ସତ,
ଗରିବ ଟିକିଏ ଉପରକୁ ଗଲେ-
ମାରେ ଗରିବକୁ ନାତ ।(୨୮୩)

ଅଭାବୀର ଦୁଃଖ ଦୂର କଲେ କେହି-
ଆସିବ ନୂଆ ଅଭାବ,
ନିଜ ଆଭାବକୁ ଦୂର କଲେ ନିଜେ-
ପାଏ ସୁଖ ଅନୁଭବ ।(୨୮୪)

ପାପ ଦ୍ୱାରା ଧର୍ମ ନାଶଯାଏ ପୁଣି-
ପ୍ରେମରେ ଶତ୍ରୁ ଭାସଇ,
ମିଥ୍ୟା ନାଶ ଯାଏ ସତ୍ୟ ପ୍ରକାଶରେ-
ଶାନ୍ତି କ୍ରୋଧକୁ ନାଶଇ ।(୨୮୫)

ସଂସାରେ ଯେତିକି ନିର୍ଧନ ଅଛନ୍ତି-
ଧନ ପାଇଁ ହାଇଁ ପାଇଁ,
ତାଙ୍କଠାରୁ ବେଶି ସ୍ନେହର କାଙ୍ଗାଳ-
ରହି ଅଛନ୍ତି ଅନାଇଁ ।(୨୮୬)

ଅଳ୍ପବୁଦ୍ଧି ଲୋକ କାର୍ଯ୍ୟ ଆରମ୍ଭରୁ-
ହୋଇପଡ଼େ ଅସ୍ତ ବ୍ୟସ୍ତ,
ବୁଦ୍ଧିମାନ ଲୋକ କାର୍ଯ୍ୟ ଶେଷ ଯାଏ-
ହୁଏନାହିଁ ବିଚଳିତ ।(୨୮୭)

ବଡ଼ ମଣିଷ ଯେ ହୋଇଛି ଜଗତେ-
ନୂଆ କିଛି କରିନାହିଁ,
ପୁରୁଣା କାର୍ଯ୍ୟରେ ଭିନ୍ନ ରୂପ ଦେଲେ-
ନୂଆ ହୋଇଯାଏ ସେହି ।(୨୮୮)

ଅହଂକାର ପୁଣି କ୍ରୋଧ ମହାଶତ୍ରୁ-
କରେ ମଣିଷର କ୍ଷତି,
ବିଦ୍ୱାନ ହେଲେବି ଅହଂକାରୀ ଲୋକ-
କେଉଁଠି ପାରେନି ଜିତି ।(୨୮୯)

ଧୀରେ ହେଉ ପଛେ କାର୍ଯ୍ୟ ଚାଲିଥିଲେ-
ମିଳିପାରେ ଆଶ୍ୱାସନା,
ହତାଶ ବିଷାଦେ କାର୍ଯ୍ୟରୁ ନିବୃତ-
ଦୋଷାବହ ହେବସିନା ।(୨୯୦)

ଅତ୍ୟାଚାର ଭାଷା ପୁଣି ପରିଭାଷା-
ଅଟେ ଅତ୍ୟନ୍ତ ଜଟିଳ,
ବିଭିନ୍ନ ଦିଗରୁ କରିଲେ ବିଚାର-
ମିଳିବ ସାମାନ୍ୟ ଫଳ ।(୨୯୧)

ଉଚ୍ଚ ପଦବୀରେ ଆସୀନ ମଣିଷ-
ହେଲେ ସମ୍ବେଦନଶୀଳ,
ଅତ୍ୟାଚାର ପାପ ନିଶ୍ଚୟ କମିବ-
ଦୁର୍ବଳ ପାଇବ ବଳ ।(୨୯୨)

ପ୍ରକୃତ ଶିକ୍ଷା ହିଁ ଭିତ୍ତିଭୂମି ଗଢେ-
ସଂସ୍କାର ବିକାଶ ପଥ,
ଅଶିକ୍ଷା ସର୍ବଦା ସଂସ୍କାର ବିରୋଧୀ-
ବଦଳାଏ ନାହିଁ ମତ ।(୨୯୩)

ଅନ୍ୟର ପ୍ରତିଷ୍ଠା ପଦବୀକୁ ଦେଖି-
ହୋଇବା ସଦା ପ୍ରସନ୍ନ,
ଅହଂକାରୀ କ୍ରୋଧି ଲୋଭୀ ଜନପ୍ରତି-
ହୋଇବା ନିରାଭିମାନ ।(୨୯୪)

ଈର୍ଷାର ନିଆଁରେ ପୋଡ଼ି ଯାଇଛନ୍ତି-
କେତେ ଜାତି ଧର୍ମ,ବଂଶ,
ଈର୍ଷା ନିଆଁ ନିଜ ହୃଦୟରେ ଆସି-
ନିଜକୁ କରଇ ନାଶ ।(୨୯୫)

କ୍ଲାନ୍ତ ପଥଶ୍ରାନ୍ତ ହସ୍ତୀଟିଏ ଆସି-
ବୃକ୍ଷମୂଳେ ଆଶ୍ରା ନିଏ,
ଫେରିବା ପୂର୍ବରୁ ସେ ବୃକ୍ଷକୁ ଭାଙ୍ଗି-
ଡାଳ ପତ୍ର ଖାଇଯାଏ ।(୨୯୬)

ନୀଚମନା ଆଉ କୃତଘ୍ନ ମଣିଷ-
ପାଇଥିଲେ ଉପକାର,
କ୍ଷତି କରିଥାଏ ଉପକାରୀ ଜନେ-
ଭୁଲି ଧର୍ମ-ପାପ ଡର ।(୨୯୭)

ସଂସାର ବୃକ୍ଷରେ ଦୁଇଟି ଅମୃତ-
ଫଳ ଫଳି ଝୁଲୁଥାଏ,
ମଧୁର ବଚନ ଗୋଟିଏ ତହିଁରୁ-
ସାଧୁ ସଙ୍ଗ ଅନ୍ୟଟିଏ ।(୨୯୮)

ଅସୁସ୍ଥ ମନସ୍କ ମଣିଷ ସବୁଠି-
ଦୁଃଖ ଭୋଗ କରୁଥାଏ,
ତା ପାଇଁ ସଂସାରେ ଭଲ ସ୍ଥାନ ନାହିଁ-
ଦୁଃଖରେ ସେ ବୁଡ଼ି ରହେ ।(୨୯୯)

ଦଣ୍ଡଧାରୀ ଆଉ ବଳବାନ ପାଶେ-
ବଳେ ହୁଏ ମଥା ନତ,
ଦୁଃଖୀ ଜନ ପ୍ରତି ହୁଏ ଯିଏ ନମ୍ର-
ସେହି ଏକା ଭଦ୍ରଲୋକ ।(୩୦୦)

ଅନ୍ନ-ଜଳ ଆମେ ଉଦରକୁ ନେଉ-
ବାହାରଇ ମଳମୂତ୍ର,
ଅସଲ ଚିଜଟି ଶୋଷି ହୋଇ ରହେ-
ସେଥିରୁ ତିଆରି ରକ୍ତ ।(୩୦୧)

ନ୍ୟାୟ ଅନ୍ୟାୟରୁ କର୍ମ ଅକର୍ମରୁ-
ମିଶି ଆସିଥାଏ ଧନ,
ଅସଲ ବେଳକୁ ଦୁହେଁ ବାରି ହୋଇ-
ବାଛନ୍ତି ନିଜର କାମ ।(୩୦୨)

ସତ୍ୟ ଶ୍ରମ ଧନ ମଞ୍ଜି ହୋଇ ରହେ-
ବୃକ୍ଷ ନୀତି ଅନୁସରି,
ଅଧର୍ମ ବିତ୍ତଟି ଅଗ୍ନି ହୋଇ ରହେ-
ଅଙ୍କେ ଖୋଷଣି ଆବୋରି ।(୩୦୩)

ବୃକ୍ଷ ନିଜ ଗୁଣ ଛାଡ଼େ ନାହିଁ କେବେ-
ପଥିକକୁ ଦିଏ ଛାୟା,
ନିଜ ପକ୍ୱ ଫଳ ବିତରି ଅନ୍ୟକୁ-
ଶେଷେ ଦାନ କରେ କାୟା ।(୩୦୪)

ବୃକ୍ଷ ତ୍ୟାଗ ଦେଖି  କେତେ ଦେବଦେବୀ-
ତା ମୂଳେ କରନ୍ତି ବାସ,
ସେହିପରି ତ୍ୟାଗୀ ହୃଦେ ରହି ପ୍ରଭୁ-
ବଢାନ୍ତି ତା କିର୍ତ୍ତୀ ଯଶ ।(୩୦୫)

କାହାରି ପ୍ରଶଂସା କାହା ନିନ୍ଦାବାଣୀ-
ଅଳିକ ସେ କ୍ଷଣସ୍ଥାୟୀ,
ନ୍ୟାୟ ପଥରୁ ଯେ ବିଚ୍ୟୁତ ହୋଇନି-
ରହେ ଚିରଦିନ ପାଇଁ ।(୩୦୬)

ପର୍ବତରେ ପଡ଼ିଥାଏ ଶିଳା ଖଣ୍ଡ-
ତାକୁ ଅବା କିଏ ଚାହେଁ ?
ଶିଳ୍ପୀର ପରଶେ ମୂର୍ତ୍ତୀକୁ ଦେଖିଲେ-
କେତେ ମଥା ନଇଁ ଯାଏ ।(୩୦୭)

ପାପୀ ତାପୀ କୋପୀ ଲୋଭୀ ମଣିଷକୁ-
କିଏ ବା କରେ ଆଦର,
ଧର୍ମର ପରଶେ ତ୍ୟାଗୀ ହେଲେ ସେହି-
ଫିଟାଏ ଈଶ୍ୱର ଦ୍ୱାର ।(୩୦୮)

ମହାପାପୀ ନାମେ ଖ୍ୟାତ ରତ୍ନାକର-
ମହାତ୍ମା ବାଲ୍ମିକୀ ହେଲେ,
ନିଜ ଅପକର୍ମ ହୀନ କ୍ରୋଧ ପଣ-
ଛାଡ଼ି ହୁଏ କାଳବଳେ ।(୩୦୯)

ଝଡ଼ ବାତ୍ୟା ବୃକ୍ଷ ଉପାଡ଼ି ପୋପାଡ଼େ-
ଉଠାଇ ପାରେନା କେବେ,
ଖଳଲୋକ ସଦା କ୍ଷତି କରେ ଖାଲି-
ମହତ କର୍ମକୁ ନିନ୍ଦେ ।(୩୧୦)

ପଥର ଖଣ୍ଡଟି ଜଳ ଶୋଷେନାହିଁ-
ବୁଡ଼ି ରହିଲେ ବି ଜଳେ,
ଅହଂକାରୀ ଯଥା ସତ୍ୟକୁ ମାନେନା-
ପାପ ଅଧର୍ମର ବଳେ ।(୩୧୧)

ସାତଗୋଟି ଭାବ ମନରେ ଜାଗଇ-
ମଣିଷର ମୁକ୍ତିପାଇଁ,
ସମ-ସଦ-ବୀର-ଦୟା -ତ୍ୟାଗ- ପ୍ରେମ-
ଅହୋଭାବ ତାକୁ କହି ।(୩୧୨)

ସମ ଭାବ ପ୍ରାଣୀ ଦ୍ୱେଷ ନାଶକରେ-
ବୀରଭାବ ଅଧୈର୍ଯ୍ୟର,
ଦୟା ଭାବ କ୍ଷମା କରୁଣା ରୂପରେ-
ନାଶ କରେ ଅହଂକାର ।(୩୧୩)

ଆସକ୍ତିରୁ ମୁକ୍ତି ଦିଏ ତ୍ୟାଗ ଭାବ-
ମୋହ ମୁକ୍ତି କରେ ପ୍ରେମ,
ଅହୋଭାବ ଯାହା ଆନନ୍ଦ ରୂପରେ-
ଦୂର କରିଥାଏ କାମ ।(୩୧୪)

ସଦଭାବ କେବେ ହୋଇଲେ ଜାଗ୍ରତ-
ଈର୍ଷାରୁ ମିଳଇ ମୁକ୍ତି,
ସାତୋଟି ଭାବକୁ ଜାଗ୍ରତ କରିଲେ-
ଆସଇ ଈଶ୍ୱର ଭକ୍ତି ।(୩୧୫)

ଝଡ଼ ମହାବାତ୍ୟା ଦୁବଘାସଟିର-
କ୍ଷତି କରି ପାରେନାହିଁ,
ବଳବାନ ହାତୀ ପିମ୍ପୁଡ଼ି ଜନ୍ଦାଙ୍କୁ-
କେବେ ପାରେନାହିଁ ଛୁଇଁ ।(୩୧୬)

ସେହିପରି ଜ୍ଞାନୀ ଅଜ୍ଞାନ ପ୍ରାଣୀକୁ-
ଶତ୍ରୁ କରି ପାରେନାହିଁ,
ଉଚ୍ଚ ପଦଧାରୀ ତଳିଆ କର୍ମୀଙ୍କୁ-
କ୍ଷମା କରେ ଦୋଷପାଇଁ ।(୩୧୭)

ଖଳଜନ କଥା ଶୁଣି ସାଧୁଜନ-
ମନଟି ହୁଏ ଦୁର୍ବଳ,
ବିଶ୍ୱାସ କରିଲେ ବିପଦେ ପଡ଼ଇ-
ନୋହିଲେ ଲାଗେ କନ୍ଦଳ ।(୩୧୮)

ଅସମ୍ଭବ ଶବ୍ଦ ନାହିଁ ଏ ଜଗତେ-
ଲୋଡ଼ା ଯୋଗ୍ୟ ଲୋକଟିଏ,
ଯାହା ଲୋଡ଼ା ସବୁ ରହିଛି ଜଗତେ-
ଖୋଜି ହେଲେ ମିଳିଯାଏ ।(୩୧୯)

କାର୍ତ୍ତିକ ହବିଷ ପରେ ମଣିଷର-
ଯଥା ଛାଡ଼ଖାଇ ହୁଏ,
ଉପବାସ ପରେ ବାଘର ପାରଣା-
ପଶୁ ମାରି ରକ୍ତ ପିଏ । (୩୨୦)

ଧରମ ନାମରେ ଭଣ୍ଡାମୀ ପଣରେ-
କରେ ଯିଏ ଉପବାସ,
ପବିତ୍ର ନାମରେ ଜୀବ ହତ୍ୟା ଏକା-
ଈଶ୍ୱରଙ୍କୁ ଉପହାସ । (୩୨୧)

ଭକ୍ତି ଅନୁରାଗ ସ୍ନେହଭାବ ଥିଲେ-
ତହିଁରୁ ଜନମେ ପ୍ରେମ,
ପ୍ରେମ ଉପୁଜିଲେ ବିଶ୍ୱାସ ଜନମେ-
ରହେନାହିଁ ମନେ ଭ୍ରମ । (୩୨୨)

ନିଜ ବିଶ୍ୱାସରେ ଅଟଳ ରହିଲେ-
ଫଳବତୀ ହୁଏ କାର୍ଯ୍ୟ,
ପ୍ରତି ସଫଳତା ଅନ୍ତରାଳେ ଥାଏ-
ସହିଷ୍ଣୁତା ଆଉ ଧୈର୍ଯ୍ୟ । (୩୨୩)

ପ୍ରେମଭାବ ଦ୍ୱାରା ହିଂସ୍ର ଜୀବ ଜନ୍ତୁ-
ସ୍ୱୀକାର କରନ୍ତି ବଶ,
ଈଶ୍ୱର ସହଜେ ପ୍ରାପତ ହୋଇବେ-
ଦେଖ କରି ପ୍ରେମାଭ୍ୟାସ । (୩୨୪)

ପାପ ଲୁଚିଥାଏ ମିଥ୍ୟାର କୋଳରେ-
ଯଥା ଅଜାଗାରେ ଘାଆ,
ଘାଆ ବଢିଗଲେ ଆରୋଗ୍ୟ ନୁହଁଇ-
ତଥା ବଢେ ପାପ କାୟା । (୩୨୫)

ଗୁପ୍ତରୋଗ କଥା ପ୍ରକାଶ କରିଲେ-
ଚିକିତ୍ସା ହୁଏ ସଫଳ,
କୁକର୍ମକୁ ଖୋଲି କହିଦେଲେ ଥରେ-
ପାପ ହୁଅଇ ଦୁର୍ବଳ । (୩୨୬)

ଯତନ ପୂର୍ବକ ପେଡ଼ିଲେ ବାଲିରୁ-
ବାହାରି ପାରିବ ତେଲ,
ମୃଗତୃଷ୍ଣା ମଧ୍ୟ ତୃଷାର୍ତ୍ତ ପ୍ରାଣୀକୁ-
ଯୋଗାଇ ପାରିବ ଜଳ । (୩୨୭)

ନିରନ୍ତର ଖୋଜି ପାଇପାରେ କେହି-
ଠେକୁଆର ଦୁଇ ଶିଙ୍ଗ,
ମୂର୍ଖ ଆଉ ଦୁଷ୍ଟ ପ୍ରାଣୀର କଦାପି -
ବଦଳିବ ନାହିଁ ଢଙ୍ଗ । (୩୨୮)

ଅସ୍ଥିର ମନା ଯେ ଦୁର୍ଜନ ମଣିଷ-
କ୍ଷଣିକରେ ହୁଏ ତୁଷ୍ଟ,
କ୍ଷଣିକରେ ପୁଣି ରୁଷ୍ଟ ହୋଇଥାଏ-
କ୍ଷଣିକରେ ଦିଏ କଷ୍ଟ । (୩୨୯)

ଦୁର୍ଜନ ଜନର ଦୟା ସ୍ନେହ ଭାବ-
ମୂର୍ଖର ପୀରତି ଦାନ,
କ୍ଷଣିକରେ ପୁଣି ଓଲଟି ଯାଏ ସେ -
କ୍ଷଣିକେ ନିଏ ଜୀବନ । (୩୩୦)

ବିନାଶରୁ ପୁଣି ନୂତନ ପ୍ରକାଶ-
ମୃତ୍ୟୁରୁ ହୁଏ ଜନମ,
ଅସ୍ତରୁ ଉଦୟ ସୃଷ୍ଟିରୁ ବିଲୟ-
ବିଧିର ଏହି ବିଧାନ । (୩୩୧)

ପ୍ରବଳ ଶକତି ଅଖଣ୍ଡ କ୍ଷମତା-
ଥାଏ ହାତରେ ଯାହାର,
ସଂଯମରେ ଅପପ୍ରୟୋଗ ନକଲେ-
ହୁଏ ସେ ପ୍ରକୃତ ବୀର । (୩୩୨)

କ୍ଷମତା ନଥାଇ ଯୋଗ୍ୟତା ନଥାଇ-
ବଡ଼ ବଡ଼ କଥା କହେ,
ଅଲାଜୁକ, ବୋକା ନରାଧମ ନାମେ-
ସଦା ପରିଚିତ ହୁଏ । (୩୩୩)

ଧୈର୍ଯ୍ୟଚ୍ୟୁତ ହେଲେ ସକଳ କ୍ଷେତ୍ରରେ-
ପ୍ରାଣୀର ବଡଇ ଦୁଃଖ,
ଧୈର୍ଯ୍ୟରୁ ସାହସ ସାହସରୁ ଶକ୍ତି-
ଶକ୍ତିରୁ ଉପୁଜେ ସୁଖ ।(୩୩୪)

ପୁସ୍ତକ ହେଉଛି ଉପବନଟିଏ-
ସୁଖ ଶାନ୍ତି ଛାୟା ଦିଏ,
ସୁଖରୁ ସପନ ତହିଁରୁ ଭାବନା-
ଭାବନାରେ କର୍ମ ହୁଏ । (୩୩୫)

ପୁସ୍ତକ ପରାଏ ବନ୍ଧୁଟିଏ ନାହିଁ-
ଜ୍ଞାନର ସେ ପିତା ମାତା ,
ଭାବ ଓ ଭାବନା ଚିନ୍ତା ଓ ଚେତନା-
ବିବେକର ଜନ୍ମଦାତା । (୩୩୬)

ଜୀବନ୍ତ ମଣିଷ ସମାନ ପୁସ୍ତକ-
ସଭିଙ୍କର ପ୍ରାଣଧନ,
ପୁସ୍ତକ ସହିତ ତୁଳନା ହେବାକୁ-
ନାହିଁ ସଂସାରେ ରତନ । (୩୩୭)

ପଠନରୁ ଶକ୍ତି ଠୁଳ ହୋଇଥାଏ-
ଶକ୍ତିରୁ ପ୍ରେରଣା ମିଳେ,
ପ୍ରେରଣାରୁ ପୁଣି ନୂତନ ରଚନା-
ସୃଷ୍ଟି ହୁଏ କାଳ ବଳେ । (୩୩୮)

ନଦୀରେ ଭରସା  ନାଉରିଆ ପାଇଁ-
ଆହୁଲା ଜୀବନ ତରୀ,
ସଂସାର ନଦୀରେ ସତ୍ୟ ହିଁ ଭରସା-
ପାପରୁ କରିବ ପାରି । (୩୩୯)

ଯୁଗ ଯୁଗ ଧରି ମୈନାକ ପର୍ବତ-
ବୁଡ଼ି ରହିଛି ସାଗରେ,
ଜଳ କି ଲବଣ ପ୍ରଭାବରେ କେବେ-
କୋମଳ ହୋଇ ନ ପାରେ । (୩୪୦)

ଶାସ୍ତ୍ରରେ ନିପୁଣ ବେଦାନ୍ତ ମୁଖସ୍ଥ-
ହୋଇ କଲେ ପୂଜା ପାଠ,
ତଥାପି ଦୁର୍ଜନ ହୃଦୟ କଦାପି-
ଖୋଜେ ନାହିଁ ନ୍ୟାୟ ବାଟ । (୩୪୧)

ସକଳ ସଞ୍ଚୟ କ୍ଷୟ ହୁଏ ପୁଣି-
ଉନ୍ନତିର ଅବନତି,
ଉର୍ଦ୍ଧ୍ୱଗାମୀ ଯାନ ଅର୍ଦ୍ଧକୁ ଆସଇ-
ଅତିରୁ ହୁଅଇ ଇତି । (୩୪୨)

ସାଗର ଶଯ୍ୟାର ବାଲି ଗରଡ଼ାରେ-
ଶିଉଳି ଲାଗଇ ନାହିଁ,
କାର୍ଯ୍ୟରତ ଥିବା ମଣିଷ ହୃଦକୁ-
କଳଙ୍କ ପାରେନା ଛୁଇଁ । (୩୪୩)

ରତ୍ନ ଚମକଇ ଘର୍ଷଣ କରିଲେ-
ଚମକେ ସୁନା ପୋଡ଼ିଲେ,
ମାନବ ଜୀବନ ମହାନ ହୁଅଇ-
ସଂଘର୍ଷରେ ବଢିଥିଲେ । (୩୪୪)

ଧୂର୍ତ୍ତ ମଣିଷର ପ୍ରଶଂସା ଅପେକ୍ଷା-
ବିଚାରବନ୍ତ ଧିକ୍କାର,
କଟୁ ଲାଗୁ ପଛେ ମନ ଶରୀରକୁ-
ଶତଗୁଣେ ହିତକର । (୩୪୫)

ଯାହାର ମନଟି ବିବେକ ଅଧୀନ-
ଈଶ୍ୱର ବିଶ୍ୱାସୀ ସିଏ,
ଅନ୍ୟର ଅନିଷ୍ଟ ଚିନ୍ତା କରିବାକୁ-
କୁଣ୍ଠିତ ହୋଇବ ସିଏ । (୩୪୬)

ପୁସ୍ତକ ରଖିଲେ ଜ୍ଞାନ ବଢେ ନାହିଁ-
ପଢି ବୁଝିବାକୁ ହୁଏ,
ଧନ୍ୟ ସେହି ଏକା ପୁସ୍ତକ ଜ୍ଞାନକୁ-
କାମରେ ଲଗାଏ ସିଏ । (୩୪୭)

ନମ୍ର ଆଉ ଭଦ୍ର ଆଚରଣ ପାଇଁ-
ଅର୍ଥ ଲୋଡ଼ା ହୁଏନାହିଁ,
ନମ୍ରତା ବଳରେ ଅମୂଲ୍ୟ ପଦାର୍ଥ-
କିଣିହୁଏ ନିଜ ପାଇଁ । (୩୪୮)

ଗୋଟିଏ କଥାକୁ ଶୁଣିଥାଉ ଆମେ-
ପତାଇ ଦୁଇଟି କାନ,
ଦୁଇଗୋଟି ଆଖି ଦେଖନ୍ତି ଗୋଟିକୁ-
ଲଗାଇଲେ ପୁଣି ଧ୍ୟାନ । (୩୪୯)

ଆଖି କାନ ନାକ ସ୍ୱାଧୀନତା ପାଇ-
କରନ୍ତି ନିଜର କାମ,
ଜିଭଟିର ଦଶା ବୁଝିଛ କି କେବେ-
ସତେ ତା କରମ ବାମ । (୩୫୦)

ଗୋଟିଏ ଜିଭର ଅନେକ କର୍ତ୍ତବ୍ୟ-
ଲାଗିଛି ବାଡ଼ ଦାନ୍ତର,
ଓଠ ଦୁଇ ପୁଣି କବାଟ ହୋଇଛି-
ନାହିଁ ସ୍ୱାଧୀନତା ତାର । (୩୫୧)

ଆଖି ଫୁଟିଗଲେ କଣା ହେବ ସିନା-
କାଲ ହେବ କାନ ବିନା,
ଜିଭ ଖସିଗଲେ ମହତଟି ଯିବ-
ତେଣୁ ଏତେ କଟକଣା । (୩୫୨)

କଣା କାଲ ପାଇଁ ନିନ୍ଦା ମିଳେନାହିଁ-
ମହତଟି ଗଲେ ଗଲା,
ମହତରେ ଥାଏ ମଣିଷ ପଣିଆ-
ସେଥିପାଇଁ ଏତେ ପାଲା । (୩୫୩)

ଶରୀର ରୂପକ ପରିବାରେ ନାରୀ-
ଜିଭ ରୂପେ ବିଦ୍ୟମାନ,
ସକଳ ଜଞ୍ଜାଳ ଦାୟିତ୍ୱ ନିଏ ସେ-
ସମାଜର ସ୍ୱାଭିମାନ । (୩୫୪)

ଉତ୍ତମ ଜନ ଯେ କ୍ଷଣିକରେ କ୍ରୋଧ-
ଭୁଲି ଯାଇ ଖୋଜେ ସୁଖ,
ମଧ୍ୟମ କ୍ରୋଧକୁ ଚାପିରଖି କଣ୍ଠେ-
ପାଉଥାଏ ନିଜେ ଦୁଃଖ । (୩୫୫)

ଅଧମ କ୍ରୋଧକୁ ଦିନ ରାତି ରଖେ-
ଖୋଜେ ସୁବିଧା ସୁଯୋଗ,
ଅଧମା ଧମ ଯେ କ୍ରୋଧକୁ ଭୁଲେନା-
ଆଜୀବନ ତା ଦୁର୍ଯୋଗ । (୩୫୬)

ମନକୁ ଚଳାଏ ବିବେକ ଚେତନା-
ଲଜ୍ଜା ବିବେକର ସାଥୀ,
ଲଜ୍ଜାହୀନ ହେଲେ ବିବେକ ଅଚଳ-
ପାପ କର୍ମେ ରହେ ମତି । (୩୫୭)

ଅନୀତି ଅନ୍ୟାୟ ପାପ ଜଗିବାକୁ-
ପ୍ରହରୀ ହିଁ ଧର୍ମଶାସ୍ତ୍ର,
ନୀତି ଶିକ୍ଷା ଏକା ସଚେତନ କରେ-
ଧରି ନ୍ୟାୟ ନୀତି ଅସ୍ତ୍ର । (୩୫୮)

ଉତ୍ତମ ମଣିଷ କ୍ଷମା କରି ଜାଣେ-
ପର ଦଶ ଦୋଷ ପାଇଁ,
ସାମାନ୍ୟ ଦୋଷରେ ନିଜକୁ ସେ କେବେ-
କ୍ଷମା ଦେଇପାରେ ନାହିଁ । (୩୫୯)

ବିଜୟ ମହତ୍ତ୍ୱ ପ୍ରକାଶ ହୁଅଇ-
ଥିଲେ କ୍ଷମା ତ୍ୟାଗ ଦୟା,
ପ୍ରବୀଣ ବୀର ସେ ହୃଦୟକୁ ଯାର-
ଛୁଇଁ ପାରେନାହିଁ ମାୟା । (୩୬୦)

ସାଧନାରେ ସିଦ୍ଧି କର୍ମରେ ସୁଫଳ-
ଲୁଚି ଛପି ରହିଥାଏ,
ଅଧ୍ୟବସାୟରେ ସଫଳତା ପୁଣି-
ଉଙ୍କିମାରି ଛୁପିଯାଏ । (୩୬୧)

ନିଜର କ୍ରୋଧକୁ ନିଜର ମନକୁ-
ନିୟନ୍ତ୍ରଣ କରେ ଯିଏ,
ଭୀରୁ ନୁହେଁ କିବା ପରାଧୀନ ନୁହେଁ-
ପ୍ରକୃତ ସ୍ୱାଧୀନ ସିଏ । (୩୬୨)

ଜଳ ଭଣ୍ଡାରର ସୁରକ୍ଷା ନିମନ୍ତେ-
ଛଡ଼ା ଯାଏ କିଛି ଜଳ,
ଧନ ସମ୍ପତ୍ତିର ସୁରକ୍ଷା କରିବ-
ଦାନ କରି ଧନ ବଳ । (୩୬୩)

କଳୁଷ ସମାଜେ ପ୍ରତିକୂଳେ ଥାଇ-
କଳୁଷିତ ହୁଏନାହିଁ,
ସୁଖ ସୁବିଧାକୁ ଗୁରୁତ୍ୱ ଦିଏନା-
ଜାଣିବ ମହାତ୍ମା ସେହି । (୩୬୪)

ମାଗିବା ଲୋକଟି ମାଗିଦେଲେ ଥରେ-
ରହିଯାଏ ଛୋଟ ହୋଇ,
ବଳୀକୁ ମାଗିଲେ ନିଜେ ନାରାୟଣ-
ବାମନ ରୂପକୁ ବହି । (୩୬୫)

ମନଟି ଯାହାର ପ୍ରଫୁଲ୍ଲିତ ଥାଏ-
ସଦା ଚଞ୍ଚଳ କର୍ମରେ,
ପ୍ରକୃତ ସୁଖର ଅଧିକାରୀ ସେହି-
ବିଶ୍ୱାସ ଥାଏ ଧର୍ମରେ । (୩୬୬)

ବୋକାମୀରୁ ଜନ୍ମ ହୋଇଥାଏ କ୍ରୋଧ-
ଅନୁତାପେ ନାଶ ଯାଏ,
ଉପକାର କଲେ ଅହଂକାର ଜନ୍ମେ-
ଭୁଲିଗଲେ ଧନ୍ୟ ହୁଏ । (୩୬୭)

ସଂଗୀତ ରୂପକ ଔଷଧ ଲାଗଇ-
ଭାଙ୍ଗି ପଡ଼ିଥିବା ମନେ,
ପଶୁ ପକ୍ଷୀ ବୃକ୍ଷ ହୁଅନ୍ତି ପାଗଳ-
ସଂଗୀତର ଆକର୍ଷଣେ । (୩୬୮)

ଭିକ୍ଷା ମୁଠେ ଦେଇ ଥାଳ ଭରି ଦେଲେ-
ଯାଏନା ଭିକାରି ଦୁଃଖ,
ଉପଯୁକ୍ତ କାମ ଗରିବକୁ ଦେଲେ-
ପାଇବ ସେ ଚିର ସୁଖ । (୩୬୯)

ଧନବାନ ବନ୍ଧୁ ଧନ ଦେଇ ପାରେ-
ଜ୍ଞାନୀ ବନ୍ଧୁ ଦିଏ ଜ୍ଞାନ,
ଗରିବ ହେଲେ ବି ଧନୀ ତୁଳନାରେ-
ଜ୍ଞାନୀର ଉଚ୍ଚ ଆସନ । (୩୭୦)

ଭଲ ଖୋଜି ନେବ ଭଗାରି ପାଖରୁ-
ବଇରୀର ପରାକ୍ରମ,
ଖରାପ ଖୋଜିବ ଦୁର୍ବଳ ଦେଖିବ-
ନିଜ କଲା କର୍ମମାନ । (୩୭୧)

ଯେତେ ବଡ଼ କାମ ଆରମ୍ଭ କାଳରେ-
ଲାଗେ ଆଗ ଅସମ୍ଭବ,
ପ୍ରତ୍ୟେକ ମହତ କାମ ଆରମ୍ଭରେ-
ମିଳିଥାଏ ପରାଭବ । (୩୭୨)

ପାଶେ ପାଶେ ଥାଇ ଶତ୍ରୁ ଭଳି କେହି-
କରୁଥିଲେ ବ୍ୟବହାର,
ମଥା ନଇଁ ଯିବ ଉଚିତ ବେଳରେ-
କର ତାର ଉପକାର । (୩୭୩)

କର୍ମ ପ୍ରତି ଯିଏ ବିମୁଖ ସର୍ବଦା-
ହୋଇବ ନିଶ୍ଚେ ନିର୍ଦ୍ଧନ,
ବିଦ୍ୟା ଶିକ୍ଷା ପ୍ରତି ବିମୁଖ ବିଦ୍ୟାର୍ଥୀ-
ପାଇ ପାରିବନି ଜ୍ଞାନ । (୩୭୪)

ଅକର୍ମାର ପାଇଁ ସଂସାର ନିର୍ଜୀବ-
ଚତୁର୍ଦ୍ଦିଗ ଅନ୍ଧକାର,
ଅଯୋଗ୍ୟର ପାଇଁ ସବୁ ଅସମ୍ଭବ-
ନାହାନ୍ତି ଇଶ୍ୱର ତାର । (୩୭୫)

ଇଚ୍ଛାକଲେ କେବେ ଆନନ୍ଦ ମିଳେନା-
ଇଚ୍ଛାରେ ମିଳେନା ସୁଖ,
ଇଚ୍ଛାମୟ ହରି କୃପା ଲୋଡୁଥିଲେ-
ହରିଯାଏ ସବୁ ଦୁଃଖ । (୩୭୬)

ବିଜ୍ଞ ଜନ ସଦା  ନିଜର ମନକୁ-
ଆନନ୍ଦ ପ୍ରଫୁଲ୍ଲ ରଖେ,
ନିଜ ସୀମା ରେଖା ଜାଣି କାର୍ଯ୍ୟ କରେ-
ଆତ୍ମାରେ ଈଶ୍ୱର ଦେଖେ । (୩୭୭)

ନିଜ ପରିବାର ନିଜର ସଂସାର-
ଶୃଙ୍ଖଳିତ ଯା ଜୀବନ,
ଜାଣିରଖ ସେହି ଯୋଗ୍ୟ ସୁପୁରୁଷ-
ଆଶା କରିବ ପୂରଣ । (୩୭୮)

ସତ୍ୟ ବସିଥାଏ ଖୋଲା ସିଂହାସନେ-
ଲୁଚି ରହେ ମିଥ୍ୟା,ପାପ,
ଯଥା ବୃକ୍ଷ ଡାଳେ ମୟୂର ବସଇ-
ହୁଙ୍କାରେ ଲୁଚଇ ସାପ । (୩୭୯)

ଜୀବନଟି ହୁଏ ଦୁଃଖମୟ ସିନା-
ଯିଏ ଅନୁଭବ କରେ,
ଜୀବନଟି ଖାଲି ସୁଖମୟ ଲାଗେ-
ଯିଏ କଳପନା କରେ । (୩୮୦)

ଶକ୍ତି ଆସେନାହିଁ ଦେହର ବଳରୁ-
ଯନ୍ତ୍ର ମନ୍ତ୍ର ତନ୍ତ୍ର ଦେଇ,
ଇଛାଥିଲେ ମନେ ବଳ ଭରିଯାଏ-
ଅସରନ୍ତି ଶକ୍ତି ହୋଇ । (୩୮୧)

ସେହି ଲୋକ ସିନା ମହାଜନ ଯିଏ-
ଅଳପେ ସନ୍ତୁଷ୍ଟ ଥାଏ,
ଦୁନିଆ ଜଞ୍ଜାଳ ସହଜ ତା ପାଇଁ-
ଦୁଶ୍ଚିନ୍ତା ଦୂରେଇ ରହେ । (୩୮୨)

ପରହିତେ କିବା ଦେଶହିତ ପାଇଁ-
ଦେଇଥାଏ ଯିଏ ପ୍ରାଣ,
ତାକୁ ହିଁ ସହିଦ ଆଖ୍ୟା ମିଳିଥାଏ-
ସଭିଏ କହନ୍ତି ଧନ୍ୟ । (୩୮୩)

ପ୍ରେମର ଦେବତା ଶ୍ରଦ୍ଧାଦେବୀ ଦୁହେଁ-
ମୃତ୍ୟୁଦେବଠାରୁ ବଡ଼,
ଯେଣୁ ପ୍ରେମ ଦିଏ ମୃତ୍ୟୁ ଖାଲି ନିଏ-
ଶ୍ରଦ୍ଧା ଭାଙ୍ଗେ ଦୁଃଖ ଝଡ଼ । (୩୮୪)

ଅନ୍ୟର ଲାଞ୍ଛନା ଥଟ୍ଟା ପରିହାସ-
କଟୁ ଭାଷା ଅତ୍ୟାଚାର,
ଦୁର୍ବଳ ଶିଶୁର ମନଟି ଶିକାର-
ହୁଏ ହୀନମନ୍ୟତାର । (୩୮୫)

ଉପଯୁକ୍ତ ଗୁରୁ ଯୋଗ୍ୟ ପିତା ମାତା-
ଭିନ୍ନ ବାଟେ ତାକୁ ନିଅ,
ନୂତନ ପ୍ରେରଣା ଆଶା ଯୋଗାଇଲେ-
ଫେରିବ ଆତ୍ମ ପ୍ରତ୍ୟୟ । (୩୮୬)

ଲୋଭରୁ ଉତ୍ପତ୍ତି ହୋଇଥାଏ କାମ -
କ୍ରୋଧ, ଇର୍ଷା ,ମୋହ, ମାୟା,
ପରଶ୍ରୀକାତର ଲୋଭର ଗର୍ଭରେ-
ବଢାଇଥାଏ ତା କାୟା । (୩୮୭)

ଯେତେଦିନ ପ୍ରାଣୀ ରହିଛି ସଂସାରେ-
ତାକୁ ଛାଡ଼େନାହିଁ ମାୟା,
ସୁଖ ଦୁଃଖ ପାଇ ମାୟାର ବଳରେ-
ସକଳେ ହୁଅନ୍ତି ବାୟା । (୩୮୮)

ସୁଖ ଦୁଃଖକୁ ଯେ ସମାନ ମଣଇ-
ମାୟା କି କରିବ ତାର ?
ଲୋଭକୁ ଦୂରେଇ ରଖିଲେ ମଣିଷ-
ସବୁ ଦୁଃଖ ହେବ ଦୂର । (୩୮୯)

ପରମ୍ପରା ରୀତି ସଂସ୍କୃତିକୁ କେବେ-
କରିବନି ଅସମ୍ମାନ,
ଏଥିରେ ରହିଛି ଜାତି ପରିଚୟ-
ଲୋକାଚାର ସ୍ୱାଭିମାନ । (୩୯୦)

ଷଡ଼ରିପୁ କେବେ ପ୍ରବଳ ହୋଇଲେ-
ନିଏ ହିତା ହିତ ଜ୍ଞାନ,
ହିତା ହିତ ଜ୍ଞାନ ହରାଇଲେ ପ୍ରାଣୀ-
ହରାଏ ନିଜ ଜୀବନ । (୩୯୧)

ପ୍ରତିଦିନ ନିଜ କାର୍ଯ୍ୟର ସମୀକ୍ଷା-
କରୁଥିବା ଦରକାର,
ଯାହା ମୁଁ କରିଛି ମହତ ଜନର-
ଅନୁରୂପ କେତେ ଦୂର ? । (୩୯୨)

ଯଦି ତାହା ଥାଏ ଇତର ପ୍ରାଣୀର-
କାର୍ଯ୍ୟ ସହିତ ସମାନ,
ଆଜି ସେ କାର୍ଯ୍ୟର ଗତି ବଦଳାଇ-
କରିନେବା ସଂଶୋଧନ । (୩୯୩)

ଯେଉଁ ଚିଜ ପାଇଁ ମନଟି ପ୍ରଫୁଲ୍ଲ-
ତା ପାଇଁ ହୁଏ ବିକଳ,
ଯେଉଁ ଦରବଟି ତାତିଯାଏ ଶିଘ୍ର-
ସେ ହୁଏ ଶୀଘ୍ର ଶୀତଳ । (୩୯୪)

ମୋକ୍ଷ ଲାଭ ପାଇଁ କଠିନ ତପସ୍ୟା-
ନିଷ୍ଠା ତ୍ୟାଗ ଲୋଡ଼ାନାହିଁ,
ଅନାବିଳ ଭାବ ନିଷ୍କାପ ଚେତନା-
ଯଥେଷ୍ଟ ମୋକ୍ଷର ପାଇଁ । (୩୯୫)

ବାଳକ ସୁଲଭ ସମ ଦୃଷ୍ଟି ଭାବ-
ଯାର ପବିତ୍ର ହୃଦୟ,
ଭକ୍ତ ଧ୍ରୁବ ପରି ଧର୍ମ ଦେବତାଙ୍କୁ-
କରି ପାରିବ ସେ ଜୟ । (୩୯୬)

ମୋକ୍ଷର ପଥରେ ବୃଥା ଅହଂକାର-
ସଦା ଅନ୍ତରାୟ ହୁଏ,
ଶ୍ରେଷ୍ଠତାର ଭାବ ଅହେତୁକ ଭ୍ରମ-
ଉଦ୍ରେକ କରାଇଥାଏ । (୩୯୭)

ପଛକଥା ନେଇ ଅନୁଶୋଚନାରେ-
ବସେନାହିଁ ବିଜ୍ଞଜନ,
ଏହି ମୁହୂର୍ତ୍ତରେ ଯାହା ଉପଯୁକ୍ତ-
କରିନିଏ ତା ବିଧାନ । (୩୯୮)

କ୍ଷମା କରିଦେଲେ ପାପୀର ଅତୀତ-
ବଦଳି ଯିବନି ସତ,
ଏକଥା ନିଶ୍ଚୟ ପାପୀ ଇଚ୍ଛା କଲେ-
ବଦଳିବ ଭବିଷ୍ୟତ । (୩୯୯)

ହଜମି ନହୋଇ ଖାଦ୍ୟ ରହିଥିଲେ-
ପେଟ କରେ ରୋଗ ଜାତ,
ପୁସ୍ତକ ନପଢି ଥାକରେ ଥୋଇଲେ-
ଶେଷରେ ହୋଇବ ଖତ । (୪୦୦)

ଦଶ ଜନମରେ ପିତାଙ୍କ ସେବାରେ -
ଯେଉଁ ଫଳ ମିଳିପାରେ,
ଜନନୀ ସେବାରେ ସେ ସବୁ ପ୍ରାପତ-
ହୋଇଥାଏ ସହଜରେ । (୪୦୧)

ଅଜ୍ଞାନତା ପାଶେ ମଣିଷ ଦାସତ୍ୱ-
ହୁଏ ଘୃଣାର କାରଣ,
ସଚେତନ ଥିଲେ ଅନୀତି କାର୍ଯ୍ୟକୁ - .
ବିବେକ କରେ ବାରଣ । (୪୦୨)

ଅନ୍ୟର ଲାଞ୍ଛନା ମିଥ୍ୟା ପ୍ରତାରଣା-
ଡେଲା ନରମ ମାଟିର,
ଦୃଢ ଚିତ୍ତଥିବା ମଣିଷ ଦେହରେ-
ବାଜି ହୁଏ ଛାରଖାର । (୪୦୩)

## ବାସ୍ତୁଶାସ୍ତ୍ର

ବାସ୍ତୁ ଶାସ୍ତ୍ର କହେ ଘରର ଉତ୍ତରେ-
ଲଗାଅ ଅଶୋକ ବୃକ୍ଷ,
ଅଁଳା ବେଦନା ଲଗାଇଲେ କେବେ-
ଘରେ ରହିବନି ଦୁଃଖ ।(୪୦୪)

ଘର ପୂର୍ବ ଦିଗେ ବରଗଛ ଥିବ-
ପଶ୍ଚିମରେ ବେଲ ଓସ୍ତ,
ବାୟୁ କୋଣେ ନିମ୍ବ ସାତୋଟି ଲଗାଅ-
ମନକୁ ରଖିବ ଶାନ୍ତ ।(୪୦୫)

ଐଶାନ୍ୟ କୋଣରେ ତୁଳସୀ କଦଳୀ-
ଅଶ୍ୱଗନ୍ଧା ନାରିକେଳ,
ହଳଦୀ ଅରଣ୍ଡୀ ବାଡ଼ିରେ ଲଗାଅ-
ମିଳୁଥିବ ଶୁଭଫଳ ।(୪୦୬)

ଦାଣ୍ଡ ଦୁଆରେ କି ଅଗ୍ନି କୋଣେ ନେଇ-
ବୃକ୍ଷ ଲଗାଇବ ନାହିଁ,
ନୈଋତ କୋଣରେ କୌଣସି ବୃକ୍ଷ-
ରହିଲେ କ୍ଷତି ଘଟଇ ।(୪୦୭)

ଘରଠାରୁ ଦୂରେ ପଶ୍ଚିମ ଦିଗରେ-
ଲଗାଇବ ଆମ୍ବ ଗୁଆ,
ବାଉଁଶ ପଣସ ଅର୍ଜୁନ ମେହେନ୍ଦି-
ଶମୀ ଚମ୍ପା କି ନଡ଼ିଆ ।(୪୦୮)

## ବୃକ୍ଷ ରୋପଣ

ରାଶି ଅନୁସାରେ କିଏ କେଉଁ ଗଛ-
ଲଗାଇବ ମନେ ରଖ,
ଜ୍ୟୋତିଷ ଶାସ୍ତ୍ରରେ ନିର୍ଦ୍ଦେଶ ରହିଛି-
ଲଗାଇ ସାରି ପରଖ ।(୪୦୯)

ମେଷ ରାଶି ପାଇଁ ନଡ଼ିଆ ମଙ୍ଗଳ,
ବୃଷକୁ ଅଶୋକ ସାର,
ମିଥୁନ ଅଁଳା ଅପାମାର୍ଗ ଗଛ-
କର୍କଟ ହର ଶୃଙ୍ଗାର ।(୪୧୦)

ସିଂହ ରାଶି ବେଲ ବାଉଁଶ ପଳାଶ-
କନ୍ୟାକୁ ଅଁଳା ଭଲ,
ତୁଳାକୁ ଅଶୋକ ବିଛାକୁ ନଡ଼ିଆ-
ଧନୁକୁ ହଳଦୀ ମୂଳ ।(୪୧୧)

ମକର ରାଶିକୁ ସଫଳ କରାଏ-
କରଞ୍ଜ ଅଶ୍ୱତ୍ଥ ନିମ୍ବ,
ସେହିଗଛ ପୁଣି ଶୁଭଫଳ ଦେବ-
ଯାହା ରାଶି ଥିବ କୁମ୍ଭ ।(୪୧୨)

ମୀନ ରାଶି ଲୋକ କଦଳୀ ହଳଦୀ-
ବରଗଛ ଲଗାଇବେ,
ବୃକ୍ଷଦେବ ନିଶ୍ଚେ ହୋଇବେ ପ୍ରସନ୍ନ-
ସଦା ଶୁଭ ଫଳ ଦେବେ।(୪୧୩)

## ବ୍ୟତିକ୍ରମ

ବସନ୍ତ ଋତୁରେ ନୂଆ ପତ୍ର ଦେଇ-
ହସନ୍ତି ବୃକ୍ଷ ସକଳେ,
ବାଉଁଶ ଗଛଟି କି ଦୋଷ କରିଛି-
ରୁକ୍ଷ ଦିଶଇ ବିକଳେ ।(୪୧୪)

ଦିବା ଆଲୋକରେ ବିହଙ୍ଗ ଉଡ଼ନ୍ତି-
କଳରବ କରି ସୁଖେ,
ପେଚା ବି ବିହଙ୍ଗ ଛାଡ଼ି ପକ୍ଷୀ ସଙ୍ଗ-
ଅନ୍ଧକାରେ ବସେ ଦୁଃଖେ।(୪୧୫)

ସବୁ ପଶୁ ପରି ବାଦୁଡ଼ି ଉଡ଼େନା-
ପକ୍ଷୀ ପରି ବସେନାହିଁ,
ମୂଷା ପରି ପୁଣି ଗାତରେ ପଶେନା-
ଝୁଆ ଦିଏ ଡାଳେ ରହି ।(୪୧୬)

ବୃକ୍ଷ ଲତା ଡାଳ କଅଁଳି ଉଠଇ-
ଆସିଲେ ବରଷା କାଳ,
ପଦ୍ମ ପୋଖରୀଟି ହୁଏ ଛାରଖାର-
ପଡ଼ିଲେ ବରଷା ଜଳ ।(୪୧୭)

ମେଘରୁ ହୁଅଇ କରକା ବରଷା-
ଥଣ୍ଡା ବରଫଙ୍କୁ ବଳି,
ସେଥିରୁ ପ୍ରକାଶେ ଭୟଙ୍କର ଅଗ୍ନି-
କଞ୍ଚାବୃକ୍ଷ ଦିଏ ଜାଳି ।(୪୧୮)

କେତେ ବ୍ୟତିକ୍ରମ କେତେ ଯେ ବିଚିତ୍ର-
ଏହି ସଂସାରର ଗତି,
କିଏ ହାରି ଯାଏ ଯୁଦ୍ଧର ଆଗରୁ-
କିଏ ଯୁଦ୍ଧେ ରହେ ମାତି ।(୪୧୯)

## ଇଷ୍ଟ ବିଶ୍ୱାସ

ଦ୍ୱାଦଶ ରାଶିର ଇଷ୍ଟଙ୍କୁ ଚିହ୍ନିଲେ-
ତାଙ୍କ ମନ୍ତ୍ର କରି ଜପ,
ରୋଗ, ଶୋକଠାରୁ ଉଦ୍ଧାର ପାଇବ-
ହରିବ ସକଳ ପାପ ।(୪୨୦)

ମେଷ ରାଶି ଲୋକ ବଗଳାମୁଖୀଙ୍କୁ-
ସୂର୍ଯ୍ୟଦେବଙ୍କୁ ପୂଜିବ,
ବୃଷ ରାଶି ଥିଲେ ହରିହର ସେବି-
ନମଃ ଶିବାୟ୍ ଜପିବ ।(୪୨୧)

ରାଧାକୃଷ୍ଣଙ୍କର ଯୁଗଳ ମୂରତି-
ପୂଜିବ ରାଶି ମିଥୁନ,
ମୀନ ରାଶି ପୁଣି ରାଧାକୃଷ୍ଣ ପୂଜି-
ଜପିବ ଗୋବିନ୍ଦ ନାମ ।(୪୨୨)

ରାମ ସୀତା ହନୁ କର୍କଟ ରାଶିର-
ମା ବନଦୁର୍ଗା ସିଂହର,
କନ୍ୟା ରାଶି ପ୍ରିୟ୍ ଲକ୍ଷ୍ମୀ ନାରାୟ୍ଣ-
ମା ମହାଲକ୍ଷ୍ମୀ ତୁଳାର ।(୪୨୩)

ବିଛା, ଧନୁରାଶି ଲକ୍ଷ୍ମୀଙ୍କୁ ପୂଜିବ-
ଉପବାସ ଗୁରୁବାରେ,
ମକର ରାଶିର ଦକ୍ଷିଣ କାଳୀ ମା-
ପୂଜୁଥିବ ଶନିବାରେ ।(୪୨୪)

କୁମ୍ଭ ରାଶି ଇଷ୍ଟ ଦେବ ମହାଦେବ-
ତାଙ୍କ ପୂଜା ସୋମବାରେ,
ଆମିଷ ଭୋଜନ ନିଷେଧ ସେଦିନ-
ଗ୍ରହଦୋଷ ଯାଏ ଦୂରେ ।(୪୨୫)

# ସ୍ୱପ୍ନ ଫଳ-ଜ୍ୟୋତିଷ ଶାସ୍ତ୍ର

ସ୍ୱପ୍ନଫଳକୁ ଯେ ବିଶ୍ୱାସ କରନ୍ତି-
ତାଙ୍କ ପାଇଁ ଦୁଇପଦ,
ଜ୍ୟୋତିଷ ଶାସ୍ତ୍ରରେ ଲେଖା ଅଛି ଯାହା-
ହୋଇପାରେ ଫଳପ୍ରଦ ।(୪୨୬)

ଶୁକ୍ଳପକ୍ଷ ପୁଣି କୃଷ୍ଣ ପକ୍ଷ ଫଳ-
ଦେଇଥାଏ ଯେଉଁ ସ୍ୱପ୍ନ,
କେଉଁ କଡ଼ ମାଡ଼ି କେଉଁ ପ୍ରହରରେ-
ସବୁଥିରେ ଫଳ ଭିନ୍ନ ।(୪୨୭)

ଶୁକ୍ଳ ପ୍ରତିପଦ ଏକାଦଶୀ ପୁଣି-
ଦ୍ୱାଦଶୀରେ ସ୍ୱପ୍ନ ହେଲେ,
ମନେ ରଖିଥିବ ଭଲ କିବା ମନ୍ଦ-
ବିଳମ୍ବରେ ଫଳ ଫଳେ ।(୪୨୮)

ଚତୁର୍ଥୀ ତିଥିରୁ ଦଶମୀ ପର୍ଯ୍ୟନ୍ତ-
ଯାହା ଦେଖିବ ସ୍ୱପନ,
ତ୍ରୟୋଦଶୀ ଆଉ ଚତୁର୍ଦ୍ଦଶୀ ରାତି-
ସ୍ୱପ୍ନ ବୃଥା ଯାଏ ଜାଣ ।(୪୨୯)

ପୂର୍ଣ୍ଣିମା ରାତିର ସ୍ୱପ୍ନଟି ସଂପୂର୍ଣ୍ଣ-
ସତ୍ୟ ହୁଏ କହେ ଶାସ୍ତ୍ର,
କୃଷ୍ଣ ପକ୍ଷ ସ୍ୱପ୍ନ ବିଚାର କରିବା-
ଯାହା ଜ୍ୟୋତିଷଙ୍କ ମତ ।(୪୩୦)

ଦ୍ୱିତୀୟର ଫଳ ବିଳମ୍ବରେ ଫଳେ-
ଅଷ୍ଟମୀର ବିପରୀତ,
ଅମାବାସ୍ୟା ସ୍ୱପ୍ନ ଦୁଃଖ ଆଣିଥାଏ-
ବ୍ୟାକୁଳ ହୁଅଇ ଚିତ୍ତ ।(୪୩୧)

ପ୍ରଥମ ପ୍ରହର ସ୍ୱପ୍ନର ସୁଫଳ-
ମିଳଇ ଏକ ବର୍ଷରେ,
ଦ୍ୱିତୀୟ ପ୍ରହର ଫଳ ସାତ ମାସେ-
ତୃତୀୟ ତିନି ମାସରେ ।(୪୩୨)

ଚତୁର୍ଥ ପ୍ରହର ସ୍ୱପ୍ନଫଳ ମିଳେ-
ଦଶଟି ଦିନ ଭିତରେ,
ପ୍ରଭାତରେ ଯାହା ସ୍ୱପ୍ନ ହୋଇଥିବ-
ଫଳିବ ତିନି ଦିନରେ ।(୪୩୩)

ସ୍ୱପ୍ନ ଦେଖି ସାରି ପୁଣି ନିଦ୍ରା ଗଲେ-
ସେ ସ୍ୱପ୍ନ ହୁଏ ନିଷ୍ଫଳ,
ପୁରୁଷ ଡାହାଣ କଡ଼ ମାଡ଼ି ଥିଲେ-
ମିଳିବ ସ୍ୱପ୍ନ ସୁଫଳ ।(୪୩୪)

ସବୁ ସ୍ୱପ୍ନ କିନ୍ତୁ ସତ ହୁଏ ନାହିଁ-
ବିଜ୍ଞାନ କହୁଛି ଭିନ୍ନ,
ଅବଚେତନରେ ଯାହା ଭାବେ ମନ-
ସ୍ୱପ୍ନରେ ହୁଏ ଦର୍ଶନ ।(୪୩୫)

# ଆୟୁର୍ବେଦ ଚିକିତ୍ସା

ସ୍ୱାସ୍ଥ୍ୟରକ୍ଷା  ନୀତି କହିବା କିଞ୍ଚିତ-
ଆୟୁର୍ବେଦ ଶାସ୍ତ୍ର କଥା,
ଯେଉଁ ଚିକିତ୍ସାରେ ରହିଛି ଆମର-
ଅନୁଭୂତି ଅଭିଜ୍ଞତା ।(୪୩୬)

ସମାନ ଭାଗରେ ଚୂର୍ଣ୍ଣ  କରି ରଖ-
ଶୁଣ୍ଠି ସହିତ ପିପ୍ପଳୀ,
ନାଗେଶ୍ୱର ଫୁଲ କେଶର ମିଶାଇ-
ଗୋଘୃତରେ କର ଗୁଳି ।(୪୩୭)

କୋଡ଼ିଏ ଗ୍ରାମ୍‌ରୁ ଅଧିକ ହେବନି-
ଖାଉଥିବ  ଦୁଇମାସ,
ଗୋଟିଏ ଲେଖାଁଏ ସେବନ କରିଲେ-
ଛାଡ଼ିଯାଏ  ବନ୍ଧ୍ୟା  ଦୋଷ ।(୪୩୮)

ବଚ ଚୂର୍ଣ୍ଣ ସହ କୁଡ଼ ଚୂର୍ଣ୍ଣ ମହୁ-
ଉନ୍ମାଦ ରୋଗ ଔଷଧ,
ବ୍ରାହ୍ମୀ ଘୃତ ବ୍ରାହ୍ମୀ ରସାୟନ ନାଶେ-
ମାନସିକ  ଅବସାଦ ।(୪୩୯)

ଗଙ୍ଗ ଶିଉଳିର ପତ୍ରକୁ ସିଝାଇ-
ରସ କରୁଥିଲେ ପାନ,
ଶିରା ଟଣା ବିନ୍ଧା ଗୁଧ୍ରସୀ ବାତର-
କଷ୍ଟ ହୁଏ ପ୍ରଶମନ ।(୪୪୦)

ଶୁଦ୍ଧ ମନଃଶିଳା ଘିଅରେ ମିଶାଇ-
ଚର୍ମରେ କଲେ ମର୍ଦ୍ଦନ,
ଯାଦୁ କୁଣ୍ଡିଆର ମୂଳ ପୋଛ ହେବ-
ଖାଦ୍ୟରେ ଲୋଡ଼ା ଯତନ ।(୪୪୧)

ସୋରିଷ ତେଲରେ ପିଆଜର ରସ-
ମିଶାଇ ମର୍ଦ୍ଦନ କଲେ,
ବାତ ବେଦନାରୁ ଶାନ୍ତି ମିଳିଥାଏ-
ଭଣ୍ଡା ଜଙ୍ଘ ବିନ୍ଧୁଥିଲେ ।(୪୪୨)

ମୂତ୍ର କୁଛ ରୋଗ ନିବାରଣ ପାଇଁ-
ବରୁଣ ଛାଲିକୁ ଆଣ,
ଜଳରେ ସିଝାଇ ଗୁଡ଼ ସଙ୍ଗେ କ୍ୱାଥ-
ନିୟମିତ କର ପାନ ।(୪୪୩)

ବତୁରା ମେଥିକୁ ବାଟି ପାନ କଲେ-
ବହୁ ରୋଗ ହୁଏ ଦୂର,
ଶୂଳ ଝାଡ଼ା ପାଇଁ ଅବ୍ୟର୍ଥ ଔଷଧ-
ମିଳିଥାଏ ଉପକାର ।(୪୪୪)

ଅରଖ ଛାଲିକୁ କାଞ୍ଜି ପାଣି ସହ-
ଲାଜକୁଳି ପତ୍ର ନେଇ,
ବାଟି ଲାଗାଇଲେ କୋଷ ବୃଦ୍ଧି କମେ-
ଯନ୍ତ୍ରଣା ଲାଘବ ହୋଇ ।(୪୪୫)

ଶ୍ୱାସ ରୋଗ ପାଇଁ ବାସଙ୍ଗ ପତ୍ରର-
ରସ କରି ଆହରଣ,
ତିନିଥର ନିତି ନଅଟି ଚାମଚ-
ମହୁ ସଙ୍ଗେ କର ପାନ ।(୪୪୬)

ମେଦ ବୃଦ୍ଧି ମୋଟା କମାଇବା ପାଇଁ-
ପାକଳ ଲେମ୍ବୁଟି ନିଅ,
ରସ ଫୁଟା ପାଣି ମହୁ ମିଶାଇକି-
ଭୋଜନର ପରେ ପିଅ ।(୪୪୭)

ଭ୍ରମ ରୋଗ ଥିଲେ ଖାଇବ ଘିଅରେ-
ମିଶାଇ ତ୍ରିଫଳା ରସ,
ବଜ୍ର ମୂଳି ଚୂର୍ଣ୍ଣ ଚିନିରେ ଖାଇଲେ-
ରହିବନି ଭ୍ରମ ଦୋଷ ।(୪୪୮)

କୋଷ୍ଠ କାଷ୍ଠିନ୍ୟରୁ ମୁକ୍ତି ପାଇବାକୁ-
ଆଣିବ ଉଷୁମ କ୍ଷୀର,
ଦୁଇଟି ଚାମଚ ଜଡ଼ା ତେଲ ଦେଇ-
ରାତ୍ରିରେ ସେବନ କର ।(୪୪୯)

ଦାନ୍ତ ରୋଗ ପାଇଁ ଗରମ ହେଙ୍ଗୁକୁ-
ଲେପ ଦେଇ କରି ଦେଖ,
ଗଇଣ ପତ୍ରରେ ମହୁ ଲୁଣ ଦେଇ-
ଦାନ୍ତ ମଜବୁତ ରଖ ।(୪୫୦)

ପିପ୍ପଳୀ ଚୂର୍ଣ୍ଣରେ ପାଚିଲା କାଗେଜି-
ଲେମ୍ବୁର ରସ ଖାଇବ,
ଚିନି ମିଶିଗଲେ ଉପକାର ଦେବ-
ବଦ ହଜମି ନଥିବ ।(୪୫୧)

ଚର୍ମ ଉକୁଣୀକୁ ମାରିବାକୁ ହେଲେ-
ପୋକସୁଙ୍ଗା ପତ୍ର ରସ,
ସୋରିଷ ତେଲରେ ଫେଣ୍ଟି ଲଗାଇବ-
ଉକୁଣୀ ହୋଇବେ ନାଶ ।(୪୫୨)

କାମଳ ରୋଗକୁ ବାସଙ୍ଗର ରସ-
ହରିଦ୍ରା ଚୋପା ଧଣିଆ,
ସମ ପରମାଣେ ବଡୁରା କ୍ୱାଥକୁ-
ମିଶ୍ରି ପାଣି ସଙ୍ଗେ ଖୁଆ ।(୪୫୩)

ଅପସ୍ମାର ପାଇଁ ଶତାବରୀ ମୂଳ-
କଞ୍ଚା କ୍ଷୀରରେ ବାଟିବ,
ଦିନକୁ ଦିଥର ଖାଇଲେ ରୋଗୀର-
ବାତ କମି କମି ଯିବ ।(୪୫୪)

ଭଜା ହେଙ୍ଗୁ,ବଚ ଅଶ୍ୱଗନ୍ଧା ସହ-
ଛାୟା ଶୁଷ୍କ ବ୍ରାହ୍ମୀ ପତ୍ର,
ପ୍ରତ୍ୟେକର ଗୁଣ୍ଡ ତିନି ଗ୍ରାମ କରି-
ଔଷଧ କର ପ୍ରସ୍ତୁତ ।(୪୫୫)

ତିନି ଚାରି ମାସ ନିୟମିତ ଯଦି-
ସେବନ କରିବ ରୋଗୀ,
ଅପସ୍ମାର ବାତ ଛାଡ଼ି ଛାଡ଼ି ଯିବ-
ବହୁରୋଗୀ ଅନୁଭବୀ ।(୪୫୬)

ବହୁମୂତ୍ର ରୋଗୀ ଜାମୁ କୋଳି ମଞ୍ଜି -
ବାହ୍ୱାଡ଼ାର ଚୋପା ଆଣି,
ସମ ପରିମାଣେ ଚୂର୍ଣ୍ଣ ଚାରିଗ୍ରାମ ନେବ-
ସଙ୍ଗେ ପିବ ଥଣ୍ଡାପାଣି ।(୪୫୭)

ଅଜାଗା ଘାଆକୁ ଲୁଚାଇବ ନାହିଁ-
ନିମ୍ବ ସିଝା ପାଣି ନେଇ,
ଘାଆ ସଫା କରି ନିମ୍ବ କି କରଞ୍ଜ -
ତେଲକୁ ଦିଅ ଲଗାଇ ।(୪୫୮)

ଶିଶୁର ମଥାରେ ବଡା ହୋଇଥିଲେ-
ବେଗୁନିଆ ପତ୍ର ନିଅ,
ସିଝାଇ ପାଣିରେ ଘାଆ ଧୋଇ ସାରି-
ନଡ଼ିଆ ତେଲ ଲଗାଅ ।(୪୫୯)

ରକ୍ତ ହୀନତାକୁ ପାଳଙ୍ଗ ଶାଗର-
କଞ୍ଚା ପତ୍ର ରସ କାଢ,
ଅଧ କପ୍ ରସ ଦି ଚାମଚ ମହୁ-
ଦି ବେଳା ଔଷଧ ବାଡ ।(୪୬୦)

ପୁରୁଷତ୍ୱହାନୀ ଅନୁଭବ ହେଲେ-
ରସୁଣରୁ କାଡ ରସ,
ସମ ପରିମାଣେ ରାଶିତେଲ ଫୁଟା-
ଲଗାଇବ ଅବଶେଷ ।(୪୬୧)

ରସ ଅବଶେଷ ଗୁପ୍ତାଙ୍ଗେ ଲାଗିଲେ-
ଶିଥିଳତା ହୁଏ ଦୂର,
ଦୁର୍ବଳତା ପାଇଁ ଗୁପ୍ତାଙ୍ଗରେ ପୁଣି-
ବାନ୍ଧିବ ପାନ ପତର ।(୪୬୨)

ନିର୍ମୂଳି ଲତାକୁ ଗାଇ କ୍ଷୀରେ ବାଟି-
କଡ଼ୁା ତେଲରେ ଭାଜିବ,
ହାଡ଼ ଭଙ୍ଗା ସ୍ଥାନେ ଲିପିଲେ ଯନ୍ତ୍ରଣା-
ନିଶ୍ଚେ ଉପଶମ ହେବ ।(୪୬୩)

ସର୍ପାଘାତ ହେଲେ ପାତାଳ ଗରୁଡ଼-
ଗଛର ମୂଳକୁ ବାଟି,
ଗାଇ କ୍ଷୀର ସଙ୍ଗେ ସେବନ କରିବ-
ସର୍ପ ବିଷ ଦେବ କାଟି ।(୪୬୪)

ତୁଳସୀ ପତ୍ରର ଦୁଇତୋଳା ରସ-
ରୋଗୀକୁ ଦେବ ପିଆଇ,
ନାକରେ ଟିକିଏ ରସ ଦେଇସାରି-
କ୍ଷତରେ ଦେବ ଲଗାଇ ।(୪୬୫)

ଶୁକ୍ରାଣୁ ହୀନତା ସମସ୍ୟା  ଜାଣିଲେ-
ଅଶ୍ୱଗନ୍ଧା,ସତାବରୀ,
ତାଳ ମୂଳି ସଙ୍ଗେ ଭୂଇଁ କଖାରୁକୁ-
ସମଭାଗେ ଗୁଣ୍ଡ କରି  ।(୪୬୬)

ନିଦ୍ରାହୀନ ରୋଗୀ ସବଳ ଥିଲେ ହିଁ-
ନେବ ସର୍ପ ଗନ୍ଧା ଚୂର୍ଣ୍ଣ,
ଉଷୁମ କ୍ଷୀରରେ ପାଞ୍ଚ ଗ୍ରାମ ଦେଇ-
ରାତ୍ରିରେ କର ସେବନ  ।(୪୬୭)

ପାଦ ଫାଟେ ଯଦି ସ୍ନେହସାର ଖାଦ୍ୟ-
ଖାଅ ଫଳ କ୍ଷୀର ଘିଅ,
ଉଷୁମ ଜଳରେ ପାଦକୁ ପଖାଳି-
ଘିଅ ଲହୁଣି ଲଗାଅ  ।(୪୬୮)

ମୁହଁର ସୌନ୍ଦର୍ଯ୍ୟ ବୃଦ୍ଧି ପାଇଁ ପୁଣି-
ହଳଦୀ ଦୁଧର ସର,
କମଳା ଚୋପାର ଗୁଣ୍ଡରେ ଚନ୍ଦନ-
ମୁହଁରେ ଲେପନ କର  ।(୪୬୯)

ମଧୁମେହ ରୋଗୀ ଶହେ ଗ୍ରାମ ଲେଖାଁ-
ବେଲ ପତ୍ର ମେଥି ନେଇ,
ଜାମୁକୋଳି ମଞ୍ଜି ଗୁଡ଼ମାରୀ ପତ୍ର-
ଚୂର୍ଣ୍ଣରେ ଦେବ ମିଶାଇ  ।(୪୭୦)

ସଞ୍ଜ ସକାଳରେ ଦି ଚାମଚ ଲେଖା-
ଥଣ୍ଡା ଜଳେ ନେଉଥିବେ,
ନିୟମିତ ରୋଗୀ ସେବନ କରିଲେ-
ନିଶ୍ଚୟ ସୁସ୍ଥ ରହିବେ ।(୪୭୧)

ଲାଜଝାଡ଼ା ହେଲେ ଅମୃତ ଭଣ୍ଡାର-
ସିଝାରେ ଗୋଲ ମରିଚ,
ସୈନ୍ଧବ ଲବଣ ଗୁଣ୍ଡକୁ ମିଶାଇ-
ସେବନ ପେଟକୁ ହିତ ।(୪୭୨)

ଦୁଗ୍ଧ ମହୁ ସଙ୍ଗେ ବ୍ରାହ୍ମୀ ରସ ଦେଇ-
ସଞ୍ଜ ସକାଳ ସେବନ,
ସ୍ମରଣ ଶକ୍ତିକୁ ଜାଗ୍ରତ କରାଏ-
ଯଦି ହୋଇଥାଏ କ୍ଷୁଣ୍ଣ ।(୪୭୩)

ଗଳା ଦରଜକୁ କୁଆଁଣି ପୋସ୍ତକ-
ସମ ପରିମାଣେ ନେବ,
ସିଝାଇ ରସରେ ଗଳ ଗଳ କଲେ-
ତଣ୍ଟି ବସିବା କମିବ ।(୪୭୪)

ଧନିଆ ବଟାରେ ମିଶ୍ରିପାଣି ଦେଇ-
ସରବତ ପିଆଇବ,
ମଦ୍ୟପାନ ନିଶା ଥିଲେ ଛାଡ଼ିଯାଏ-
ଲେମ୍ବୁ ଲୁଣ ଚଟାଇବ ।(୪୭୫)

ରକ୍ତ ହୀନତାକୁ ପରିବା ପ୍ରଚୁର-
ପାଳଙ୍ଗ ଶାଗର ରସ,
ମହୁରେ ମିଶାଇ ସେବନ କରିଲେ-
ମୁହଁରେ ଫୁଟିବ ହସ ।(୪୭୬)

କରଞ୍ଜ ଶିରିଷ ମଞ୍ଜିକୁ ବଟାଇ-
ଲେମ୍ବୁ ତୁଳସୀର ରସ,
କୀଟ ଦଂଶନରେ ଲେପ ଦେବ ଯଦି-
ଯନ୍ତ୍ରଣା ହୋଇବ ନାଶ ।(୪୭୭)

ରକ୍ତର ଶୋଧନ ସହଜ ଉପାୟ-
କଷି ନିମ୍ବ ପତ୍ର ନିଅ,
ଗୋଲ ମରିଚର ଗୁଣ୍ଡକୁ ମିଶାଇ-
ସରବତ କରି ପିଅ ।(୪୭୮)

ଉଚ୍ଚରକ୍ତ ଚାପ ଚିକିତ୍ସାର ପାଇଁ-
ପାତାଳ ଗରୁଡ଼ ଚୂର୍ଣ୍ଣ,
ଦୁଇଗ୍ରାମ କରି ସଞ୍ଜ ସକାଳରେ-
ଥଣ୍ଡା ଜଳେ କର ପାନ ।(୪୭୯)

ଝାଳ ଦୁର୍ଗନ୍ଧକୁ ଦୂର କରିବାକୁ-
ଏକ ଗ୍ରାମ ଶଙ୍ଖ ଭସ୍ମ,
ବାସଙ୍ଗ ରସରେ ମିଶାଇ ଲଗାଅ-
ତାପରେ କରିବ ସ୍ନାନ ।(୪୮୦)

ଅର୍ଶ ରୋଗୀ ଯିଏ ହରିଦ୍ରା ଚୁର୍ଣ୍ଣରେ-
ଗୁଡ଼ରେ ବଟିକା କର,
ପ୍ରତିଦିନ ସନ୍ଧ୍ୟା ସକାଳେ ସେବନ-
ଅର୍ଶ ରୋଗ ହେବ ଦୂର ।(୪୮୧)

ଅଧା କପଳିରେ ମୁଣ୍ଡ ବଥା ହେଲେ-
ଚାକୁଣ୍ଡା ମଞ୍ଜିର ସହ,
ଗୋଲ ମରିଚକୁ ବାଟି ବାସିପାଣି-
ମଥାରେ ଲେପଟି ଦିଅ ।(୪୮୨)

## ସ୍ୱାସ୍ଥ୍ୟରକ୍ଷା

କାଶ ଛାଡ଼େ ନାହିଁ ହାଲିଆ ଲାଗଇ-
ଓଜନ କମଇ ଧୀରେ,
ଯକ୍ଷ୍ମା ସନ୍ଦେହରେ ପରୀକ୍ଷା କରିବ-
ଭଲ ହୁଏ ସହଜରେ ।(୪୮୩)

କୁଷ୍ଠ ରୋଗ ଆଉ ଅସାଧ୍ୟ ନୁହଁଇ-
ଆରମ୍ଭରୁ ଦେଖାଇବ,
ତମ୍ବାଳିଆ ଛଉ ଦେଖା ଦେଲେ କେବେ-
ଡାକ୍ତର ସାହାଯ୍ୟ ନେବ ।(୪୮୪)

ଚିତାକୁଟା ବେଳେ ରକ୍ତ ନେଲାବେଳେ-
ଛୁଞ୍ଚିରେ ଭୂତାଣୁ ଯାଏ ,
ସେହି ଭୂତାଣୁଟି ରୋଗ ସୃଷ୍ଟି କରି-
ମଣିଷ ଜୀବନ ନିଏ ।(୪୮୫)

କୁକୁର କି ସାପ କାମୁଡ଼ିଲେ ଆଗ-
କ୍ଷତ ଜାଗା ଧୋଇ ଦେବ,
ଗୁଣିଆ ପାଖକୁ ଯିବ ଯଦି କେହି-
ଅଯଥା ସମୟ ଯିବ ।(୪୮୬)

ସବୁ କୁକୁରଙ୍କୁ ଜଳାତଙ୍କ ରୋଗ-
ହୋଇ ନଥାଏ ଜାଣିବ,
ତଥାପି କାହାକୁ ବିଶ୍ୱାସ ନକରି-
ଡାକ୍ତରଙ୍କୁ ଦେଖାଇବ ।(୪୮୭)

ଆମରି ଶରୀର ଜଳରେ ବଞ୍ଚିଛି-
ଜଳ ହିଁ ସତୁରି ଭାଗ,
ଦୂଷିତ ହୋଇଲେ ନିର୍ମଳ ନଥିଲେ-
ଜଳରୁ ଜନମେ ରୋଗ ।(୪୮୮)

ଅସୁସ୍ଥ ଜାଣିଲେ ଅନେକ କହିବେ-
ଅମୁକ ସମୁକ ଖାଅ,
ଉପଦେଶ ମିଳେ ଅତି ସହଜରେ-
ସବୁ ନୁହେଁ ଗ୍ରହଣୀୟ ।(୪୮୯)

ଅନ୍ଧ ଜ୍ଞାନ ପୁଣି ଅନ୍ଧ ବୁଦ୍ଧି ସଦା-
କରେ ଜୀବନର କ୍ଷତି,
ବିନା ବିଚାରରେ ବିନା ନିଦାନରେ-
ଖାଅନି ଔଷଧ କିଛି ।(୪୯୦)

ନିୟମିତ ଜର ହେଉଥିବ ଯଦି-
ଘାଆ ହୋଇ ଶୁଖୁନାହିଁ,
ଆବୁ ବାହାରିଲେ ମୁଣ୍ଡ ବୁଲେଇଲେ-
ଡାକ୍ତରଙ୍କୁ ଦେଖା ଯାଇ ।(୪୯୧)

ଜର ହେଲେ ବେଶି ମଥାଟିକୁ ଆଗ-
ଧୋଇଦିଅ ଭଲ କରି,
କଟି ଯାଇଥିଲେ ବାନ୍ଧିଦିଅ ପଟି -
କଟା ଜାଗାଟିକୁ ଧରି ।(୪୯୨)

ପେଟପାଇଁ ପିତା ଦାନ୍ତକୁ ଲବଣ-
ପାଦକୁ ସୋରିଷ ତେଲ,
ଆଖିକୁ କଜ୍ଜଳ ମଥାକୁ ପଗଡ଼ି-
ଦେହକୁ ହଳଦୀ ଭଲ ।(୪୯୩)

ଆଖି ଜ୍ୟୋତି କେବେ ନଷ୍ଟ ହୋଇପାରେ-
ସାମାନ୍ୟ ତ୍ରୁଟି ହୋଇଲେ,
ଛୋଟିଆ ରୋଗଟି ପ୍ରାଣ ନେଇପାରେ-
ଜାଣି ଅଣହେଳା କଲେ ।(୪୯୪)

ବହୁ ମୂଲ୍ୟବାନ ଚକ୍ଷୁ ଦୁଇଟିକୁ-
ଥଣ୍ଡା ଜଳେ ଧୋଉଥିବ,
ଅଧିକ ଆଲୋକ ପ୍ରଦୁଷଣ ବାୟୁ-
ଧୂଆଁଠୁ ଦୂରେଇ ଯିବ ।(୪୯୫)

ଶୟନ ପୂର୍ବରୁ ଉଷୁମ ଜଳରେ-
ଦୁଇ ପାଦ ପଖାଳିବ,
ମୁକ୍ତ ବାୟୁ ପୁଣି ସ୍ୱଳ୍ପ ଆଲୋକରେ-
ସୁନିଦ୍ରା ନିଶ୍ଚୟ ହେବ ।(୪୯୬)

ଶରୀର ସହିତ ମନ ସୁସ୍ଥଥିଲେ-
ସୁନ୍ଦର ଲାଗେ ଦୁନିଆ,
ଅସୁସ୍ଥ ଶରୀର ଅସୁସ୍ଥ ମନରେ-
ଲାଗି ରହିଥାଏ ନିଆଁ ।(୪୯୭)

ହସରେ ରହିଛି ଅସରନ୍ତି ବଳ-
ରୋଗ ନିବାରଣ ଶକ୍ତି,
ଉଚ୍ଚସ୍ୱରେ ହସ ଖୋଲା ମନେ ହସ-
ବିଷାଦରୁ ପାଅ ମୁକ୍ତି ।(୪୯୮)

ରୋଗ ଆରମ୍ଭରୁ ଚିକିତ୍ସା କରିଲେ-
ବହୁ ରୋଗ ଭଲ ହୁଏ,
ଗୁଣି ଗାରେଡ଼ିର ଆଶ୍ରୟ ନିଏ ଯେ-
ଦୁଃଖ ତାର ବଢିଯାଏ ।(୪୯୯)

*ଅମୃତ ବଚନ ହିତବାଣୀ ମୋର-*
ହୋଇଲା ଏଠି ସମ୍ପୂର୍ଣ୍ଣ,
ହରିଙ୍କ ଭରସା ଆତ୍ମ ବିଶ୍ୱାସରେ-
ମନୋସ୍କାମ ହେବ ପୂର୍ଣ୍ଣ ।(୫୦୦)

❑ ସମାପ୍ତ ❑

# ଅମୃତ ବଚନ

ଡକ୍ଟର କୃତ୍ତିବାସ ନାୟକ
ଜନ୍ମ : ୦୨-୦୩-୧୯୫୫
ଗ୍ରାମ : ଏକତଲା, ରାଜକନିକା, କେନ୍ଦ୍ରାପଡ଼ା

ଡକ୍ଟର କୃତ୍ତିବାସ ନାୟକ ଓଡ଼ିଆ ସାହିତ୍ୟର ଏକ ସଶ୍ରଦ୍ଧ ଉଚ୍ଚାରଣ । ସାହିତ୍ୟର ବିଭିନ୍ନ ବିଭାବରେ କଲମ ଚଳାଇ ସେ ପ୍ରତ୍ୟେକ କ୍ଷେତ୍ରରେ ସଫଳତା ହାସଲ କରିଛନ୍ତି । ୧୯୮୩ ମସିହାରୁ ସେ ଆକାଶବାଣୀର ଜଣେ ସ୍ୱୀକୃତିପ୍ରାପ୍ତ ଗୀତିକାର । ବାଲିମେଳା ଓ ଜୟପୁରରୁ ପ୍ରକାଶିତ ଶିଶୁପତ୍ରିକା 'ଶିଶୁ ନୟନ', 'ଆମେ ଶିଶୁ', ଓ 'ଶିଶୁ ରାଇଜ'ର ସେ ଥିଲେ ସଫଳ ସଂପାଦକ । ୧୯୮୯ ମସିହାରୁ ସେ ଆକାଶବାଣୀର ଜଣେ ବରିଷ୍ଠ ଅଧିକାରୀ ଭାବରେ କାର୍ଯ୍ୟରତ । ଶିଶୁ ସାହିତ୍ୟ ପାଇଁ ସେ ୧୯୯୨ ଓ ୧୯୯୯ ମସିହାରେ ଜାତୀୟ ଶିଶୁ ସାହିତ୍ୟ ପୁରସ୍କାର ଲାଭ କରିଛନ୍ତି । ତାଙ୍କର ଉପନ୍ୟାସ 'ଶୁଭଲକ୍ଷ୍ମୀ'ର ହିନ୍ଦୀ ସଂସ୍କରଣ ପାଇଁ ସେ ୨୦୦୨ ବର୍ଷର ଜାତୀୟ ପୁରସ୍କାରରେ ପୁରସ୍କୃତ ହୋଇଛନ୍ତି । ଜ୍ଞାନ ସଂଗ୍ରହ, ଉତ୍କଳ ଦର୍ପଣ, ଢେଙ୍କାନାଳ ଦର୍ପଣ, ଆଜିର କୋରାପୁଟ, କେନ୍ଦୁଝର ଦର୍ପଣ, ସମ୍ବଲପୁର ପ୍ରତିଭା ଓ ରାଉରକେଲା ଦର୍ପଣ ପ୍ରଭୃତି ସୂଚନା ସାହିତ୍ୟ ସମେତ ତାଙ୍କର 'କୂଳବୋହୂ' ଉପନ୍ୟାସ ଓ ୪ ଖଣ୍ଡ ଗୀତି କବିତା ପୁସ୍ତକ ପ୍ରକାଶ ପାଇ ଅତ୍ୟନ୍ତ ଲୋକପ୍ରିୟ ହୋଇପାରିଛି । ଅଦ୍ୟାପି ତାଙ୍କର ୯୦ ଖଣ୍ଡ ପୁସ୍ତକ ପ୍ରକାଶ ପାଇଛି ।


ISBN 81-87968-31-1